

# ମହାଭାରତ ଚରିତମାଳା

# ପିତାମହ ଭୀଷ୍ମ

ଶ୍ରୀ ଗୋପୀନାଥ ମିଶ୍ର

ମହାଭାରତ ଚରିତମାଳା

# ପିତାମହ ଭୀଷ୍ମ



କାଶୀନାଥ ମିଶ୍ର

# ପିତାମହ ଭୀଷ୍ମ

ଲେଖକ

ଶ୍ରୀ କାଶୀନାଥ ମିଶ୍ର
ଅବସରପ୍ରାପ୍ତ ହାଇସ୍କୁଲ ପ୍ରଧାନ ଶିକ୍ଷକ
ଅଲିସାବଜାର, କଟକ-୭୫୩୦୦୨

ପ୍ରକାଶକ

କେ. କେ. ମିଶ୍ର ଆଣ୍ଡ କୋ
ଖଟବିନ୍ ସାହି, କଟକ ୭୫୩୦୦୮

ମୁଖ୍ୟ ପରିବେଷକ

ବୁକ୍ସ ଇଣ୍ଟରନ୍ୟାସନାଲ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରକ

ବାସନ୍ତୀ ଦୁର୍ଗା ପ୍ରିଣ୍ଟର୍ସ
ଖଟବିନ ସାହି, କଟକ ୭୫୩୦୦୮

ପ୍ରଥମ ପ୍ରକାଶ

ସ୍ନାନ ପୂର୍ଣ୍ଣିମା, ୧୯୮୮

ମୂଲ୍ୟ
ସାତ ଟଙ୍କା

PITAMAHA VISMA

Written by
Kasinath Mishra

Published by
K. K Mishra & Co.
Cuttack-753008

I st. Published in 1988

Price
Rupees Seven

● ପ୍ରକାଶ

ତ ହେଲେ ମୁଁ ପ୍ରତିଜ୍ଞା କରୁଛି ମୁଁ କେବେ ସିଂହାସନ ଦାବି କରିବି ନାହିଁ—ଏଥର ସନ୍ତୁଷ୍ଟ ତ ଦାସରାଜ !

ବୃଦ୍ଧ—ଆପଣ ପିତା ଆପଣଙ୍କ ଦାବୀ ଉପେକ୍ଷା କରିବେ, ମାତ୍ର ଆପଣଙ୍କ ସନ୍ତାନମାନେ ରାଜବଂଶର ପରମ୍ପରା ଅନୁସାରେ ଯୁବରାଜଙ୍କ ପୁତ୍ର ଯଥାର୍ଥ ଭାବରେ ସିଂହାସନର ଉତ୍ତରାଧିକାରୀ । ଅତି ବିନୀତ ଭାବରେ ମନର ଅନ୍ତରର ଭାବ ପ୍ରକାଶ କଲେ କୈବର୍ତ୍ତରାଜ । ତେବେ ଶୁଣ ମୋର ଦ୍ୱିତୀୟ ପ୍ରତିଜ୍ଞା—ମୁଁ ଦାରପରିଗ୍ରହ କରିବି ନାହିଁ । ସାରାଜୀବନ କୁମାର ଭାବରେ ରହିବି—ଏଥର ତ ଆଉକିଛି କହିବାର ନାହିଁ ? ବିବାହ କଲେ ପିତା ପୁତ୍ର ! ସାରାଜୀବନ ଅବିବାହିତ ରହିଲେ ଆଉ ପୁତ୍ରଜାତର ପ୍ରଶ୍ନ କେଉଁଠି ? ଆଉ କିଛି କହିବାର ଅଛି ? ଜିଜ୍ଞାସୁ ନେତ୍ରରେ ଯୁବରାଜ ଦାସରାଜଙ୍କ ଆଡ଼କୁ ଚାହିଁ ରହିଲେ ।

ଧନ୍ୟ, ଯୁବରାଜ, ଧନ୍ୟ ତୁମର ପିତୃଭକ୍ତି । ଏପରି ତ୍ୟାଗଭାବ ଆପଣଙ୍କଠାରେ ହିଁ ସମ୍ଭବ—ଆଉ ମୋର କିଛି କହିବାର ନାହିଁ । ମୋର ଅତି ଆଦରର କନ୍ୟା ସତ୍ୟବତୀଙ୍କୁ ମହାରାଜଙ୍କ ହାତରେ ସମର୍ପଣ କରିବାରେ ମୋର ଆଉ ଦ୍ୱିଧା ନାହିଁ ? ଦାସରାଜଙ୍କ ମୁଖମଣ୍ଡଳରେ ସନ୍ତୋଷର ସଙ୍କେତ ସୁସ୍ପଷ୍ଟ ।

କିଏ ଏହି ଯୁବରାଜ ? କେଉଁ ପ୍ରସଙ୍ଗରେ ତାଙ୍କର ଏହି କଠୋର ପ୍ରତିଜ୍ଞା ?

ସେ ଆଜକୁ ବହୁଦିନ ତଳର କଥା । ଚନ୍ଦ୍ରବଂଶର ଚକ୍ରବର୍ତ୍ତୀ ଭରତଙ୍କର ବଂଶଧର ଶାନ୍ତନୁ । ହସ୍ତିନାର ରାଜା ସେ । ତାଙ୍କର ସୁଶାସନରେ ପ୍ରଜାକୁଳ ସନ୍ତୁଷ୍ଟ । ତାଙ୍କର ଅମିତ ତେଜରେ ରାଜ୍ୟ ଶତ୍ରୁଶୂନ୍ୟ । ସନାତନ ଧର୍ମ ସୁରକ୍ଷିତ ।

ଦିନେ ଦ୍ୱିପ୍ରହର ସମୟ । ରାଜା ଯାଇଥାନ୍ତି ପାରିଧିକୁ । ମୃଗ ହରିଣର ପଛା । ଶିକାରର ଅନ୍ୱେଷଣରେ ସେ ଉପସ୍ଥିତ ହେଲେ ଏକ ବନର ଗଭୀରତମ ସ୍ଥାନରେ । ସ୍ଥାନଟି ନିର୍ଜନ—ସମ୍ମୁଖରେ ଜଳାଶୟ । ପଥରବନ୍ଧା ଘାଟ ଅତିକ୍ରମ କରି ରାଜା ପୁଷ୍କରିଣୀରୁ ଆକଣ୍ଠ ଜଳପାନ କରି ପ୍ରବଳ ତୃଷା ଦୂର କଲେ । [illegible] ! ଦେଖିଲେ ଗୋଟିଏ ଗଛମୂଳେ ଏକ ସୁନ୍ଦରୀ ତରୁଣୀଙ୍କୁ । ସେ ଦେବୀ କି ମାନବୀ ରାଜା ଜାଣିପାରିଲେ ନାହିଁ । ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ରାଜା ତରୁଣୀ ସମ୍ମୁଖରେ ଉପସ୍ଥିତ

ହେଲେ; ଆଉ କହିଲେ, "ସୁନ୍ଦରୀ, ତୁମେ ମର୍ତ୍ତ୍ୟର ରାଜଦୁଲାଳୀ ହୁଅ ବା ସ୍ୱର୍ଗର ଅପସରୀ ହୁଅ—ଯିଏ ହୁଅନା କାହିଁକି ମୁଁ ତୁମପ୍ରତି ଆକୃଷ୍ଟ । ତୁମକୁ ମୁଁ ପାଟରାଣୀ କରିବି ।

ସୁନ୍ଦରୀଙ୍କର ରକ୍ତାଧର ଥରିଉଠିଲା । ବୀଣାବିନିନ୍ଦିତ ସ୍ୱରରେ କହିଲେ 'କାହିଁକି ଦୁରାଶା କଲେ ମହାରାଜ ! ମୁଁ ମର୍ତ୍ତ୍ୟକନ୍ୟା ନୁହେଁ । ମୁଁ ସ୍ୱୟଂ ଗଙ୍ଗାଦେବୀ । ଏଠାରେ ନିର୍ଜନ ବସିଥାଇ ଶ୍ରାନ୍ତି ଅପନୋଦନ କରୁଥିଲି । ଆପଣଙ୍କ ମନର କଥା ମୁଁ ବୁଝିପାରୁଛି । ମୋତେ ରାଣୀ କଲେ ଆପଣ ପୂର୍ବ ପରିବର୍ତ୍ତରେ ଅଶେଷ ଦୁଃଖ ଓ ଅଶାନ୍ତିର ସମ୍ମୁଖୀନ ହେବେ । ମୋତେ ବିବାହ କରିବାପାଇଁ ଆପଣ ଇଚ୍ଛୁକ, କିନ୍ତୁ ମୋର ସର୍ତ୍ତ ଆପଣ ସହିପାରିବେ ତ ?

ପଦ୍ମ ସଦୃଶ ଚନ୍ଦ୍ରର ସେହି ସୁଧାପୂର୍ଣ୍ଣ ମୁଖ ମଣ୍ଡଳକୁ ଚାହିଁ । ମୋତେ ଆଉ କରାଣ ଛଳ କାହିଁ ସୁନ୍ଦରୀ !

ତେବେ ଶୁଣନ୍ତୁ ମୋର ସର୍ତ୍ତ—ରାଣୀ ହେବାପରେ ମୋର ଯେତେବେଳେ ଯାହା ଇଚ୍ଛା ମୁଁ କରିଯିବି । ସାଧାରଣତଃ ପୁରୁଷମାନେ ସେମାନଙ୍କ ସ୍ତ୍ରୀମାନଙ୍କ ଉପରେ ଯେପରି ପ୍ରଭୁତ୍ୱ ବିସ୍ତାର କରନ୍ତି, ସେମାନଙ୍କୁ ଅଧୀନରେ ରଖିବା ନିମିତ୍ତ ଯେଉଁସବୁ ପ୍ରକାର ପନ୍ଥା ଅବଲମ୍ବନ କରନ୍ତି, ତାହା ମୁଁ ଆଦୌ ବରଦାସ୍ତ କରିପାରିବି ନାହିଁ । ମୋ ଉପରେ ସେତେଦିନ ପର୍ଯ୍ୟନ୍ତ ଚଙ୍ଗା ବୋଲି ଆପଣ ତ ବୁଝିଥିବେ ମୁଁ ଥିବି— ରାଗୀ ବୋଲି କହିଲେ ମୋର ଆଉ ରହିବା ସମ୍ଭବ ହେବ ନାହିଁ । ମୋ ବାଟ ମୁଁ ଦେଖିବି । ଏ ସର୍ତ୍ତରେ ରାଜି ତ ? ଗଙ୍ଗାଦେବୀ ଉତ୍ତର ଅପେକ୍ଷାରେ ରହିଲେ ।

ବହ୍ନି ଦେଖି ପତଙ୍ଗ ଯେପରି ବିଭ୍ରତବୁଦ୍ଧି ହୁଏ, ଅଗ୍ନିଭେଦନରେ ଯେପରି ଝାସ ଦେବାକୁ ପ୍ରସ୍ତୁତ ହୋଇଯାଏ—ଭବିଷ୍ୟତରେ କଣ ଘଟିବ ତାର ବିଚାର ଯେପରି କରେ ନାହିଁ—ଶାନ୍ତନୁଙ୍କର ଅବସ୍ଥା ସେହିପରି । ସୁନ୍ଦରୀଙ୍କର ମୂର୍ତ୍ତିରେ ବୁଦ୍ଧି ଉପଲବ୍ଧି କରିବା ଅବସ୍ଥାରେ ସେ ନଥିଲେ— ତାଙ୍କର ଅନନ୍ୟ ସାଧାରଣ ରୂପଲାବଣ୍ୟ ତାଙ୍କୁ ପାଗଳ କରିଦେଇଥିଲା ।

ହସହସି ଉତ୍ତର ଦେଲେ ସବୁଥିରେ ମୁଁ ରାଜି ସୁନ୍ଦରୀ ।

ମହାସମାରୋହରେ ଶାନ୍ତନୁଙ୍କର ଗଙ୍ଗାଙ୍କ ସହିତ ବିବାହ ସମ୍ପନ୍ନ ହେଲା । ସମସ୍ତ ଠିକ୍ ଚାଲୁଥାଏ—ଆଉ ତା ସଙ୍ଗେ ସଙ୍ଗେ ରାଜଦମ୍ପତିଙ୍କ ପ୍ରେମପୂର୍ଣ୍ଣ ବନ୍ଧନଗୁଡ଼ିକ ମଧ୍ୟ ଅଧିକ ଦୃଢ଼ ହେଉଥାଏ ।

ହଠାତ୍ ରାଣୀ ହେଲେ ଗର୍ଭବତୀ । ଶାନ୍ତନୁଙ୍କର ହୃଦୟରେ ଆନନ୍ଦର ଜୁଆର । ପୁତ୍ର ସନ୍ତାନ ଲାଭ କରିବେ । ଚନ୍ଦ୍ରବଂଶୀ ଧାରା ରକ୍ଷା ହେବ । ଏହାଠାରୁ ଆଉ ଖୁସିର ବିଷୟ କଣ ଥାଇପାରେ ? ମାତ୍ର ହେଲା କଣ ?

ରାଣୀଙ୍କ କୋଳରେ ଦେବଶିଶୁପରି ଶିଶୁପୁତ୍ର । ସୁବର୍ଣ୍ଣ ପାତ୍ରରେ ଦର୍ଶନୀ ଧରି ରାଣୀ ପୁତ୍ରକୁ ଦେଖିବା ପାଇଁ ଉପସ୍ଥିତ । ଆଉ କେଉଁ ନାରୀ ହୋଇଥିଲେ ପଣ୍ଡିତଙ୍କ ଉପସ୍ଥିତରେ ସେ ଗର୍ବ ଅନୁଭବ କରିଥାନ୍ତେ, ମାତ୍ର ରାଣୀଙ୍କର ସେ ଭାବ ନଥିଲା । ପୁତ୍ରକୁ ଧରି ସିଧା ସିଧା ଚାଲିଲେ ଗଙ୍ଗାକୂଳକୁ । ଶାନ୍ତନୁ କିଛି ନ କହି ରାଣୀଙ୍କର ଅନୁସରଣ କରୁଥାନ୍ତି । ଯେତେବେଳେ ରାଣୀ ଶିଶୁପୁତ୍ରକୁ ଗଙ୍ଗାର ପବିତ୍ର ନୀରରେ ବିସର୍ଜନ ଦେଲେ—ରାଜା ଆଉ ସହିପାରିଲେ ନାହିଁ । ଶ୍ରାବଣରେ ବାରିଧାରପରି ରାଜାଙ୍କ ଦୁଇ ଚକ୍ଷୁରୁ ପ୍ରବାହିତ ହେଲା ଅଶ୍ରୁପ୍ରବାହ । ସର୍ତ୍ତ ଅନୁସାରେ ନୀରବରେ ଫେରି ଆସିଲେ ରାଜା ପ୍ରାସାଦକୁ—ମର୍ମ୍ମଦୁଃଖ ମନରେ ମାରି ।

ଏହାପରେ ଗୋଟିଏ ନୁହେଁ, ଦୁଇଟି ନୁହେଁ, ସାତଗୋଟି ପୁତ୍ର ଗଙ୍ଗାର ପବିତ୍ର ବାରି ସ୍ପର୍ଶକଲେ । ଅଷ୍ଟମ ପୁତ୍ରକୁ ଯେତେବେଳେ ରାଣୀ ବିସର୍ଜନ ଦେବାକୁ ଯାଆନ୍ତି ରାଜା ଆଉ ସମ୍ଭାଳିପାରିଲେ ନାହିଁ । ହଠାତ୍ ରାଣୀଙ୍କର ହାତକୁ ଧରି ପକାଇଲେ । ଏବଂ କହିଲେ—ରାଣୀ, ବଂଶଧ୍ୱଂସକାରୀ ! ଏ ପୁତ୍ରକୁ ମୁଁ କଦାପି ବିସର୍ଜନ ଦେବାକୁ ଦେବି ନାହିଁ । ରାଜାଙ୍କର କ୍ରୋଧ ଦେଖି, ଆଉ ଗାଳି ଶୁଣି ରାଣୀ ହସନ୍ତି । ରାଜାଙ୍କୁ ରାଗାଇବା ପାଇଁ ସେ ନାନା ଉପାୟ ଅବଲମ୍ବନ କରିଛନ୍ତି । ସେ ସାତ ଗୋଟି ଦେ ଛଅଟି ପୁତ୍ରଙ୍କର ଜୀବନ ନାଶ କରିଛନ୍ତି; ମାତ୍ର ଶାନ୍ତନୁ ହୃଦୟକୁ ପାଷାଣ କରି ସବୁ ସହି ଯାଇଛନ୍ତି । ଆଜି ପର୍ଯ୍ୟନ୍ତ ତାଙ୍କ ଉପରେ ଟିକିଏ କ୍ରୁଦ୍ଧ ହୋଇ ନାହାନ୍ତି ବା ଭର୍ତ୍ସନା କରି ନାହାନ୍ତି । ଫଳରେ ତାଙ୍କର ମୁକ୍ତି ସମ୍ଭବ ହୋଇ ନାହିଁ । ଆଜି ତାଙ୍କର ମନବାଞ୍ଛା ପୂରଣ ହୋଇଛି । ଶାନ୍ତନୁ ତାଙ୍କ ଉପରେ କ୍ରୁଦ୍ଧ—ସେ ଭର୍ତ୍ସିତ । ରାଣୀ ହସନ୍ତି ହୋଇ କହନ୍ତେ—ମହାରାଜ ! ଆପଣ ସ୍ୱୀୟ ପ୍ରତିଜ୍ଞା ରକ୍ଷା କରିପାରିଲେ ନାହିଁ—ମୋତେ ଗାଳି ଦେଇ ଭର୍ତ୍ସନା କଲେ । ବର୍ତ୍ତମାନ ଆପଣଙ୍କ ପୁତ୍ର ରହନ୍ତୁ, ମୁଁ ଗଲି । ପୁଣି ପରମୁହୂର୍ତ୍ତରେ କହିଲେ ମୁଁ ଚାଲିଗଲେ ଶିଶୁପୁତ୍ରର ଲାଳନପାଳନ କରିବ କିଏ ? ମୁଁ ଏହାକୁ ନେଇଯାଉଛି, ଯଥା ସମୟରେ ଫେରାଇ ଦେବି ।

ରାଜାଙ୍କର ଚେତା ପଶିଲା—ସେ ହତଭମ୍ବ ହୋଇଗଲେ । ସର୍ତ୍ତ ଅନୁସାରେ ରାଣୀ ଗମନୋଦ୍ୟତ । କେତେ ଅନୁନୟ ବିନୟ କଲେ—ସବୁ ନିଷ୍ଫଳ ହେଲା । ଗଙ୍ଗା ପୁତ୍ରକୁ ନେଇ ଅଦୃଶ୍ୟ ହୋଇଗଲେ ।

ସମୟ ଚକ୍ର ବୁଲିଥାଏ ! ରାଜକାର୍ଯ୍ୟ ଜଞ୍ଜାଳ ମଧ୍ୟରେ ସେ ପୁତ୍ର କଥା ପ୍ରାୟ ବିସ୍ମୃତ ହୋଇଯାଇଥାନ୍ତି । ଠିକ୍ ବାରବର୍ଷପରେ ଦିନେ ରାଜା ବନ ମଧ୍ୟରେ ପାରିଧି କରୁଥିବାବେଳେ ଗଙ୍ଗା ଦେବୀ ରାଜାଙ୍କୁ ପ୍ରଣିପାତ କଲେ । ସଙ୍ଗରେ ବାରବର୍ଷର ପୁଅ । ଆନନ୍ଦରେ ରାଜାଙ୍କୁ ସମର୍ପଣ କଲେ । ଆଉ ଚେତାଇ ଦେଲେ ଯେଉଁ ସାତୋଟି ପୁତ୍ର ସେ ହରାଇଛନ୍ତି—ସେମାନେ ହେଉଛନ୍ତି ସପ୍ତବସୁ । ଯେଉଁ ପୁତ୍ରଟି ଦେଖୁଛ ସେ ହେଉଛନ୍ତି ଅଷ୍ଟମ ବସୁ । ବଶିଷ୍ଠଙ୍କ ଶାପବଳରେ ସେମାନେ ମୋ କୋଳରେ ଜନ୍ମ

ତୋର ମୁକ୍ତିଲାଭ କରିଛନ୍ତି—କେବଳ ଏହି ଗୋଟିଏ ରହିଗଲା । ତୁମର ଏହି ପୁତ୍ରକୁ ଏଯାବତ ମୁଁ ବହୁ ଯତ୍ନର ସହିତ ପାଳନ କରିଛି । ଅସ୍ତ୍ରବିଦ୍ୟାରେ ଏ ମହାବୀର ପରଶୁରାମ ସହିତ ସମାନ । ବେଦବେଦାନ୍ତ ସେ ମହାମୁନି ବଶିଷ୍ଠଙ୍କଠାରୁ ଶିକ୍ଷା କରିଛି । ତୁମର ପୁତ୍ର ଧନୁର୍ବିଦ୍ୟାରେ ଧୁରୀଣ ଏବଂ ରାଜ୍ୟଶାସନ ନୀତିରେ ସୁପଣ୍ଡିତ । ସର୍ବଗୁଣରେ ପରିପୂର୍ଣ୍ଣ ଏହି ପୁତ୍ରଦ୍ୱାରା ଚନ୍ଦ୍ରବଂଶୀ ଭରତଙ୍କ ବଂଶ ଉଜ୍ଜ୍ୱଳ ହେବ । ଏହା କହି ଗଙ୍ଗାଦେବୀ ଅନ୍ତର୍ହିତ ହେଲେ ।

ମହାଆନନ୍ଦରେ ପୁତ୍ରଙ୍କୁ ନେଇ ଶାନ୍ତନୁ ଫେରିଆସିଲେ ହସ୍ତିନାପୁରକୁ । ରାଜ୍ୟବାସୀଙ୍କ ମଧ୍ୟରେ ଆନନ୍ଦର ଲହରୀ ଖେଳିଗଲା । କେତେ ଆନନ୍ଦ ଉତ୍ସବ ଲାଗିଲା—କେତେ ମିଷ୍ଟାନ୍ନ ବଣ୍ଟା ହେଲା—ଦାନପୁଣ୍ୟର ହିସାବ କିଏ ରଖିଛି ।

ଶୁଭ ଲଗ୍ନରେ ପୁତ୍ରର ନାମକରଣ ହେଲା । ଜ୍ୟୋତିଷମାନେ ନାମ ଦେଲେ ଦେବବ୍ରତ । ଗଙ୍ଗାଙ୍କ ଗର୍ଭରୁ ଜାତ ବୋଲି ତାଙ୍କର ଅନ୍ୟନାମ ଗାଙ୍ଗେୟ ।

ଦେବବ୍ରତ ବାର ବର୍ଷର ପୁଅ । ସକଳ ବିଦ୍ୟାରେ ସୁପଣ୍ଡିତ—ପରଶୁରାମଙ୍କଠାରୁ ସକଳ ଯୁଦ୍ଧ ବିଦ୍ୟା ଶିକ୍ଷା କରିଥାନ୍ତି । ମୋଟ ଉପରେ ମାତା ପୁତ୍ରକୁ ଉପଯୁକ୍ତ ଶିକ୍ଷା ଦେଇ ସ୍ୱାମୀଙ୍କ କୋଳରେ ସମର୍ପଣ କରିଥିଲେ ।

ବର୍ତ୍ତମାନ ଶାନ୍ତନୁ ଅନେକ ପରିମାଣରେ ଆଶ୍ୱସ୍ତ । ଦେବବ୍ରତ ରାଜକାର୍ଯ୍ୟରେ ସାହାଯ୍ୟ କରିବା ଫଳରେ ପିତା ସନ୍ତୁଷ୍ଟ । କ୍ରମେ ସେ ରାଜ୍ୟଭାର ପୁତ୍ରକୁ ଦେଇ ଆମୋଦ ପ୍ରମୋଦରେ କାଳାତିପାତ କଲେ ।

ବିଧିର ବିଧାନ ବିଚିତ୍ର ! ପୂର୍ବପରି ମୃଗୟା ଉଦ୍ଦେଶ୍ୟରେ ଭ୍ରମଣ କରୁକରୁ ତାଙ୍କର ଦେଖାହୁଏ ସତ୍ୟବତୀଙ୍କ ସଙ୍ଗରେ । ତାଙ୍କ ରୂପ ଭଙ୍ଗି ଅତି ଗଭୀର ଭାବରେ ରାଜାଙ୍କର ହୃଦୟକୁ ଆକର୍ଷଣ କଲା । ସେ ସତ୍ୟବତୀଙ୍କର ପ୍ରଣୟପ୍ରାର୍ଥୀ ହେଲେ । ସତ୍ୟବତୀଙ୍କ ପିତା କୈବର୍ତ୍ତମାନଙ୍କର ରାଜା ପୁଣି ଆତ୍ମସମ୍ମାନ ଜ୍ଞାନ ତାଙ୍କର ଅଛି । ସେ କହିଲେ, ଯୁବରାଜ ଥାଉଁ ଥାଉଁ ସେ ତାଙ୍କର କନ୍ୟାଙ୍କୁ ତାଙ୍କ ହସ୍ତରେ ସମର୍ପଣ କରିବେ କେଉଁ ଆଶାରେ । ଯୌବନର ମୋହ ତୁଟିଗଲା ପରେ ସେ ଜଣେ ସାଧାରଣ ପରିଚାରିକା ରୂପେ ରାଜପ୍ରାସାଦରେ ରହିବ । ଯଦି ରାଜା ପ୍ରତିଜ୍ଞା କରନ୍ତି ଯେ ସତ୍ୟବତୀଙ୍କର ପୁତ୍ର ରାଜସିଂହାସନରେ ଅଧିକାରୀ ହେବ, ତେବେ ସେ ତାଙ୍କୁ କନ୍ୟା ସମର୍ପଣ କରିବେ । ଏପରି ସର୍ତ୍ତରେ ରାଜା ତଟସ୍ଥ । ଦେବବ୍ରତପରି ଯୋଗ୍ୟ ପୁତ୍ରକୁ ସେ କିପରି ଉପେକ୍ଷା କରିବେ ? କିପରିବା ସେ ସତ୍ୟବତୀଙ୍କ ପୁତ୍ରକୁ ନିଜର ଉତ୍ତରାଧିକାରୀ ରୂପେ ସ୍ୱୀକାର କରିବେ ? ପ୍ରଜାଗଣ ତାଙ୍କୁ କଣ କହିବେ ? ଲଜ୍ଜାରେ ତାଙ୍କର ମୁଣ୍ଡ ନଇଁଗଲା । ସେ ଫେରିଆସିଲେ ରାଜପ୍ରାସାଦକୁ ଅତି ବିମର୍ଷ ଭାବରେ ।

ଆସିଲେ ସିନା, ତାଙ୍କର ମନ ରହିଥାଏ ସତ୍ୟବତୀଠାରେ । କାହାକୁ ବା ମନକଥା କହିବେ । ଚିନ୍ତାରେ କ୍ରମେ ଶୀର୍ଣ୍ଣ ହେବାକୁ ଲାଗିଲେ ।

ଦେବବ୍ରତ ଥିଲେ ଯଥାର୍ଥ ପିତୃଭକ୍ତ— ଉପଯୁକ୍ତ ପୁତ୍ର । ତେଣୁ ଅନୁସନ୍ଧାନ କଲାରେ ସେ ପିତାଙ୍କର ଅସୁସ୍ଥତାର କାରଣ ବୁଝିପାରିଲେ । ମନେ ମନେ ସ୍ଥିର କଲେ ନିଜର ଜୀବନ ବିନିମୟରେ ସେ ପିତାଙ୍କୁ ସନ୍ତୁଷ୍ଟ କରିବେ । ପିତାଙ୍କ ଯୋଗୁଁ ତାଙ୍କର ଉଦ୍ଭବ । ସେ ଯଦି ପିତୃଋଣ ଶୁଝି ନ ପାରନ୍ତି ତେବେ ତାଙ୍କର ଜନ୍ମ ବୃଥା ।

ଏହି ଦୃଢ଼ଭାବ ହୃଦୟରେ ଧରି ସେ ଉପସ୍ଥିତ ହେଲେ । ସତ୍ୟବତୀଙ୍କର ପିତା କୈବର୍ତ୍ତରାଜଙ୍କ ସମୀପରେ-ସେଠାରେ ସେ ଯେଉଁ ପ୍ରତିଜ୍ଞା କଲେ ତାହା ସହୃଦ ପାଠକ ମାନେ ପରିଚିତ । ଏହି ପ୍ରତିଜ୍ଞା କି ଭୀଷଣ ! ଏହିପରି ଭୀଷଣ ପ୍ରତିଜ୍ଞା କରୁଥିବାରୁ ସେ ଭୀଷ୍ମ ନାମରେ ପରିଚିତ ।

ଭୀଷ୍ମଙ୍କର ପିତୃଭକ୍ତିରେ ଶାନ୍ତନୁ ପରମ ସନ୍ତୋଷ ଲାଭ କରି ପୁତ୍ରକୁ ଇଚ୍ଛାମୃତ୍ୟୁ ବର ପ୍ରଦାନ କରିଥିଲେ । କେହି ଭୀଷ୍ମଙ୍କୁ ମାରିପାରିବେ ନାହିଁ । ଯେତେବେଳେ ସେ ଇଚ୍ଛା କରିବେ ଇହ ସଂସାରରୁ ବିଦାୟ ନେବେ ।

## ● ପିତାଙ୍କ ରୋଗଶଯ୍ୟାରେ

ପିତାଧର୍ମ ପିତାସ୍ୱର୍ଗ ପିତା ହି ପରମନ୍ତପ
ପିତରି ପ୍ରୀତିମାପନ୍ନେ ପ୍ରିୟନ୍ତେ ସର୍ବଦେବତା ।

ଏହି ଆଦର୍ଶରେ ଦେବବ୍ରତଙ୍କ ଜୀବନ ଗଠିତ । ଯେଉଁ ପିତାଙ୍କ ପାଇଁ ସେ କଠୋର ପ୍ରତିଜ୍ଞା କରିଥିଲେ, ସେ ଆଜି ରୋଗଶଯ୍ୟାରେ ଶାୟିତ । ଚନ୍ଦ୍ରବଂଶର ଯେଉଁ ଯଶସ୍ୱୀ ସମ୍ରାଟ ନିଜ ବାହୁବଳରେ ସନାତନ ଧର୍ମର ଶତ୍ରୁମାନଙ୍କୁ ଦୃଢ଼ ହସ୍ତରେ ଦମନ କରି ସାରା ଆର୍ଯ୍ୟାବର୍ତ୍ତରେ ଧର୍ମ ସ୍ଥାପନ କରିଥିଲେ, ଯାହାଙ୍କର ସାମର୍ଥ୍ୟ ସହାନୁଭୂତି ଯୋଗୁଁ ଗଙ୍ଗା କୂଳରେ ଶତଶତ ଆଶ୍ରମ ଗଢ଼ି ଉଠିଥିଲା, ସେ ମହାରାଜ ଶାନ୍ତନୁ ଆଜି ମୃତ୍ୟୁର ଦ୍ୱାରଦେଶରେ । ପିତାଙ୍କର ଏପରି ଅବସ୍ଥାରେ ଭୀଷ୍ମ ଚିନ୍ତିତ । କେତେ ଚିକିତ୍ସା ହୋଇଗଲାଣି, ଶ୍ରୋତ୍ରିୟମାନେ ମହାରାଜାଙ୍କର ଆରୋଗ୍ୟ ପାଇଁ ଯେତେ ହୋମ-ଯଜ୍ଞାଦି କଲେଣି —ସବୁ ନିଷ୍ଫଳ । କେତେ ମୁନିଋଷି ରାଜାଙ୍କୁ ଆଶୀର୍ବାଦ କରିଗଲେ; ତଥାପି ରୋଗ ଉପଶମର କୌଣସି ଲକ୍ଷଣ ଦେଖାଯାଉ ନାହିଁ । ରୋଗଶଯ୍ୟାରେ ପିତାଙ୍କର ଡାହାଣରେ ବସିଥାନ୍ତି ଦେବବ୍ରତ । କେତେ ଭାବନା କେତେ ଚିନ୍ତାର ବାଦଲ ତାଙ୍କର ହୃଦୟ ଆକାଶକୁ ଆଚ୍ଛନ୍ନ କରିଥାଏ ।

ଏହି ସମୟରେ ଗୃହରେ ପ୍ରବେଶ କଲେ ଋଷି । ସଙ୍ଗରେ ଥାନ୍ତି ମନ୍ତ୍ରୀ ଗୁରୁଜନ । ସବୁବେଳେ ଗୃହ ମଧ୍ୟରେ ଲୋକ ସମାଗମ । ଦେବବ୍ରତଙ୍କୁ ଭଲ ଲାଗୁ ନ ଥାଏ । ଋଷିମାନେ ଆଶୀର୍ବାଦ କରିସାରିବା ପରେ ରାଜାଙ୍କୁ ଅତି ବିନୀତ ସ୍ୱରରେ ଜଣାଇଲେ

କନ୍ୟାପାଇଁ ନିବେଦନ କଲେ । ଋଷିମାନେ ନିସ୍ତବ୍ଧ ହେଲେ; ମାତ୍ର ଜଣେ ତରୁଣ ଋଷି ଛିଡ଼ାହୋଇ ରହିଥାନ୍ତି । ବେଶଭୂଷା ମଳିନ । କଟିଦେଶ ଆବୃତ କରିଥିବା ମୃଗଚର୍ମ ଅପରିଷ୍କୃତ—ମୁଖମଣ୍ଡଳରେ ଅନାହାରଜନିତ ବିଷାଦର ଛାୟା—ତଥାପି ପ୍ରଶସ୍ତ ଲଲାଟ, ଉଜ୍ଜ୍ୱଳ ଚକ୍ଷୁ, ମୁଖରେ ଅନ୍ତରଜସ୍ୱୀ ସ୍ମିତ ହାସ୍ୟ ।

ଅନୁରୋଧ ରକ୍ଷା ନ ହେବାରୁ ଗାଙ୍ଗେୟ ବିନୀତ ଭାବରେ କହିଲେ, ଆପଣ କଣ ଚାହାନ୍ତି ।

ଉତ୍ତର ଆସିଲା—ଯୁବରାଜ, କନ୍ୟା ମାଗିବାକୁ ଆସି ନାହିଁ । ଆସିଛି କନ୍ୟା ଦେବାକୁ । ଏଥର ବହୁ ତରୁଣ ମୁନି ନିସ୍ତବ୍ଧ ହେଲେ । ରୋଗଶଯ୍ୟାରେ ଉପବିଷ୍ଟା ସାମ୍ରାଜ୍ଞୀ ସତ୍ୟବତୀଙ୍କୁ ଏହି ଉତ୍ତର ବିଚଳିତ କରିଥିଲା ।

ଅଦ୍ଭୁତ ଏ ଉତ୍ତର । ଦେବବ୍ରତ ଭାବିଥିଲେ ମୁନି କନ୍ୟା ମାଗିବାକୁ ଅପେକ୍ଷା କରିଛନ୍ତି, ମାତ୍ର ତାଙ୍କର ଏହି ଦାମ୍ଭିକତାପୂର୍ଣ୍ଣ ଉତ୍ତର ତାଙ୍କ ହୃଦୟରେ ଗଭୀର ରେଖାପାତ କଲା ।

ରାଜପ୍ରାସାଦରୁ ଅନାହାରରେ କେହି ଫେରନ୍ତି ନାହିଁ । ସେଥିପାଇଁ ଏହି ଅଭ୍ୟାଗତଙ୍କୁ ସାମ୍ରାଜ୍ଞୀ ସତ୍ୟବତୀ ନିଜ ପରିଚାରିକା ହସ୍ତରେ ଡକାଇ ପଠାଇଲେ । ଧୀର ସନ୍ତର୍ପଣରେ ଫେରି ଆସିଲେ ମୁନି । ସତ୍ୟବତୀ ତାଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ଆସନ ଛାଡ଼ି ଉଠନ୍ତେ ହଠାତ୍ ତାଙ୍କର ଓଢ଼ଣା ଖସି ପଡ଼ିଲା— ମୁନି ସେହି ପରିଚିତ ମୁଖ ଦେଖିବା ମାତ୍ରକେ ତାଙ୍କୁ ଆଶୀର୍ବାଦ କରିବେ କଣ ମା ମା କହି ପାଦତଳେ ଲୋଟିଗଲେ ।

ସତ୍ୟବତୀ ପୁଅକୁ ଚିହ୍ନିଲେ—ବହୁଦିନର ଦୁଃଖ ପୁତ୍ରସ୍ନେହର ଲହରୀ ଯେପରି ସମସ୍ତ ବାଧାବନ୍ଧ ଅତିକ୍ରମି କୃଷ୍ଣ, କୃଷ୍ଣ କହି ସେ ପୁଅ ମୁଣ୍ଡ ଉଠାଇ ନିଜ କୋଳକୁ ଟାଣି ନେଲେ । ଦୀର୍ଘ ତେର ବର୍ଷ ପରେ ମାତା ପୁତ୍ରଙ୍କର ଏହି ପୁନର୍ମିଳନ ଯେପରି ଆକସ୍ମିକ ସେହିପରି ଅପ୍ରତ୍ୟାଶିତ ।

କଥୋପକଥନରୁ ସତ୍ୟବତୀ ବୁଝିପାରିଲେ ତାଙ୍କର ଅତି ଆଦରର ଧନ କୃଷ୍ଣଦ୍ୱୈପାୟନ ପିତା ପରାଶରଙ୍କଠାରୁ ସମସ୍ତ ବିଦ୍ୟା ହାସଲ କରିଛି । ତାଙ୍କର ପ୍ରତ୍ୟୟ ହେଲା ଦ୍ୱୈପାୟନ ଚେଷ୍ଟାକଲେ ସମ୍ରାଟ ନିଶ୍ଚିତ ଭାବରେ ଆରୋଗ୍ୟ ଲାଭ କରିବେ ।

ଦ୍ୱୈପାୟନ, ପରାଶର, ସତ୍ୟବତୀଙ୍କ ମଧ୍ୟରେ ସମ୍ବନ୍ଧ ମୋ ଲିଖିତ ମହର୍ଷି ବେଦବ୍ୟାସ ପୁସ୍ତକରେ ବିସ୍ତୃତ ଭାବରେ ଆଲୋଚନା କରାଯାଇଛି ।

ସତ୍ୟବତୀ ଓ ଗାଙ୍ଗେୟଙ୍କ ପରାମର୍ଶରେ ତରୁଣ ମୁନି ସମ୍ରାଟଙ୍କ ଆରୋଗ୍ୟ ନିମିତ୍ତ ମନ୍ତ୍ରବିଦ୍ୟା ପ୍ରୟୋଗ କଲେ । ଆଶ୍ଚର୍ଯ୍ୟର କଥା, ଦଶଦିନ ମଧ୍ୟରେ ମହାରାଜ ସୁସ୍ୱାସ୍ଥ୍ୟ ଲାଭକଲେ । ଏପରିକି ଅଳିନ୍ଦବାଟ ବୁଲିବା ପାଇଁ ଆବଶ୍ୟକ ଶକ୍ତି ଫେରିପାଇଲେ ।

ଶାନ୍ତନୁ ରୋଗଶଯ୍ୟାରେ ପଡ଼ିଥିଲା ବେଳେ ରାଜ୍ୟରେ କିଏ ରାଜା ହେବେ ଏ ବିଷୟରେ ବୃଦ୍ଧପଣ୍ଡିତମାନଙ୍କ ମଧ୍ୟରେ ମତଭେଦ ଦେଖା ଦେଇଥାଏ । ଶାନ୍ତନୁଙ୍କ

ଶାନ୍ତନୁ ପୁତ୍ର ଚିତ୍ରାଙ୍ଗଦ, ବିଚିତ୍ରବୀର୍ଯ୍ୟ । ଚିତ୍ରାଙ୍ଗଦ ବଡ଼, ବୟସ ଷୋଳ ବର୍ଷ ମାତ୍ର । ତଳେ ଯୁବରାଜ ଭୀଷ୍ମଙ୍କର ସିଂହାସନ ଆରୋହଣରେ ଅସ୍ୱସ୍ତି ଥିଲାବେଳେ ଅନ୍ୟଦଳ ଚିତ୍ରାଙ୍ଗଦଙ୍କ ସପକ୍ଷରେ ଥାନ୍ତି ।

ଦେବବ୍ରତ ପିତାଙ୍କ ଶେଷଶଯ୍ୟାରେ ବସିଥାନ୍ତି ସତ, ମାତ୍ର ରାଜ୍ୟରେ ଯେ ହେଉଛି ସବୁ ଜାଣିପାରୁଥାନ୍ତି । ସେ ଚାହାଁଲେ ପିତାଙ୍କ ଦେହାନ୍ତ ହେବାପୂର୍ବେ ସେ ଯେଉଁ ପ୍ରତିଜ୍ଞା କରିଥିଲେ ଏପର୍ଯ୍ୟନ୍ତ ସର୍ବସାଧାରଣରେ ତାହା ପ୍ରକାଶିତ ହୋଇ ନାହିଁ । ତେଣୁ ଏ ସମ୍ବନ୍ଧରେ ଗୁଞ୍ଜରଣ, ଏହାଦ୍ୱାରା ସମସ୍ତ କଳହ ବନ୍ଦ ହେବ । ତାଙ୍କ ପ୍ରତିଜ୍ଞା ସେ ସ୍ୱୟଂ ରାଜସଭାରେ ପ୍ରକାଶ କରିବାକୁ ପଡ଼ିବ । ତା ନ ହେଲେ ତାଙ୍କୁ ଲୋକେ ସନ୍ଦେହ କରିବେ । ଅନ୍ୟମାନଙ୍କ କଥା ଦୂରେଥାଉ ନିଜର ମାତୃପ୍ରତିମ ସତ୍ୟବତୀ ମଧ୍ୟ ତାଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖିବେ । ଆଉ ଯେଉଁ ପିତାଙ୍କର ପ୍ରୀତିପାଇଁ ସେ ଜୀବନରେ ନିଜ ସମସ୍ତ ସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରିଛନ୍ତି ସେହି ପିତାଙ୍କ ନିକଟରେ ସେ ଲଜ୍ଜିତ ହେବେ ।

ରାଜ୍ୟସଭା ଡାକିବାର ସ୍ଥିର ହେଲା ।

ଏହି ସଭାରେ ରାଜ୍ୟର ବଡ଼ ବଡ଼ ଲୋକ ଯୋଗ ଦେଉଥାନ୍ତି । ଏଥିରେ ଯାହା ଲକ୍ଷ୍ମି ହୁଏ ରାଜ୍ୟବାସୀ ହେଉଥାନ୍ତି ସମ୍ମାନ ପ୍ରଦର୍ଶନ କରୁଥାନ୍ତି । ଏଥିରେ ଯାହା ନିଷ୍ପତ୍ତି ହୁଏ ରାଜ୍ୟବାସୀ ହେଉଥାନ୍ତି ସମ୍ମାନ ପ୍ରଦର୍ଶନ କରୁଥାନ୍ତି—ଫଳରେ ରାଜ୍ୟଶାସନ ନିର୍ବିଘ୍ନରେ ଚାଲେ ।

ସେଦିନ ରାଜସଭାରେ ସମ୍ରାଟ ଶାନ୍ତନୁ, ମୁନି ଦ୍ୱୈପାୟନ ଉପସ୍ଥିତ ଥାନ୍ତି । ଗାଙ୍ଗେୟ ସର୍ବସମକ୍ଷରେ ନିଜ ଗମ୍ଭୀର ସ୍ୱରରେ ଘୋଷଣା କଲେ ।

ଅତୀତରେ ଯେଉଁବେଳେ ମୋର ପୂଜ୍ୟ ପିତୃଦେବ ମହାରାଜ ଶାନ୍ତନୁ ସତ୍ୟବତୀଙ୍କୁ ବିବାହ କଲେ ମୁଁ କେତୋଟି ଶପଥ ନେଇଥିଲି । ତାହା ଆଜି ପର୍ଯ୍ୟନ୍ତ ସର୍ବସାଧାରଣରେ ଅପ୍ରକାଶିତ ଅଛି । ଫଳରେ ବହୁ ଦଳପତିମାନଙ୍କ ମଧ୍ୟରେ ନାନା ଗୁଜବ ସୃଷ୍ଟି ହୋଇଛି । ସେହି ଶପଥ ପ୍ରକାଶ କରିବା ପାଇଁ ଆଜି ଏହି ରାଜସଭା ଆହୂତ ହୋଇଛି ।

ଯେ କୌଣସି ପରିସ୍ଥିତିରେ ହସ୍ତିନା ରାଜସିଂହାସନର ସୁରକ୍ଷା ପାଇଁ ମୁଁ ପ୍ରତିଜ୍ଞାବଦ୍ଧ । କେତେକ ବୁଦ୍ଧି ପଣ୍ଡିତ ଚାହାନ୍ତି ମୁଁ ଭରତବଂଶର ରାଜସିଂହାସନ ଆରୋହଣ କରେ । ସେମାନଙ୍କର ଏହି ମତ ପ୍ରତି ମୋର ଯଥେଷ୍ଟ ସମ୍ମାନ ଅଛି । ସେମାନଙ୍କର ମୋପ୍ରତି ଏହି ଶ୍ରଦ୍ଧା ପାଇଁ ମୁଁ କୃତଜ୍ଞ—କିନ୍ତୁ ମୁଁ ସେମାନଙ୍କର ଇଚ୍ଛା ପୂରଣ କରିପାରୁ ନାହିଁ ।

ମୋର ଅନୁରୋଧ କ୍ରମେ ପୂଜ୍ୟ ପିତୃଦେବ ମୋ ପରିବର୍ତ୍ତେ ମୋର ଭ୍ରାତା ଚିତ୍ରାଙ୍ଗଦଙ୍କୁ ହସ୍ତିନାପୁରର ଯୁବରାଜ ପଦରେ ଅଭିଷିକ୍ତ କରିବାକୁ ଚାହାନ୍ତି—ଏଥିରେ କାହାର ବିଚଳିତ ହେବା ଉଚିତ ନୁହେଁ ।

ମୋର ଆପଣମାନଙ୍କୁ ବିଶେଷ ଅନୁରୋଧ ଆପଣମାନେ ଉଦାର ହୃଦୟରେ ପିତୃଦେବଙ୍କର ନିଷ୍ପତ୍ତି ଅନ୍ତରର ସହିତ ଗ୍ରହଣ କରିବେ ତାଙ୍କର । ନିର୍ଦ୍ଦେଶ ସର୍ବଶକ୍ତିମାନ୍ ଈଶ୍ୱରଙ୍କର ନିର୍ଦ୍ଦେଶ ବୋଲି ବିବେଚନା କରିବେ । ଏହାଦ୍ୱାରା ସିଂହାସନ ଦାବୀ ଉପେକ୍ଷା କରିବା ପାଇଁ ମୁଁ ଯେଉଁ ପ୍ରତିଜ୍ଞା କରିଛି ତାର ପାଳନରେ ସହଯୋଗ କରିବେ । ପୁଣି ଆପଣମାନେ ମୋପ୍ରତି ଯେପରି ଅନୁରକ୍ତ, ସେହି ଅନୁରକ୍ତି ନୂତନ ଯୁବରାଜଙ୍କ ପ୍ରତି ପ୍ରଦର୍ଶନ କରିବେ । ମୁଁ ପୁଣି ଥରେ ମନେପକାଇ ଦେବାକୁ ଚାହେଁ ଯେ ହସ୍ତିନାର ରାଜସିଂହାସନ ସିଏ ଆରୋହଣ କରନ୍ତୁ ନା କାହିଁକି ଆଜୀବନ ମୁଁ ତାଙ୍କୁ ସାହାଯ୍ୟ କରିବି । ସବୁପ୍ରକାର ଆପଦ ବିପଦରେ ତାଙ୍କ ପକ୍ଷରେ ଛିଡ଼ାହେବି; ଆଉ ଦେଖିବି ହସ୍ତିନାପୁରର ରାଜଶକ୍ତି ଯେପରି ଦୁର୍ବଳ ହୋଇ ନ ପଡ଼େ ।

ଗାଙ୍ଗେୟଙ୍କ ନିଷ୍ପତ୍ତିରେ ସଭା ମଧ୍ୟରେ ବିସ୍ମୟର ଢେଉ ଖେଳିଯାଉଥିଲେ ମଧ୍ୟ ସମ୍ରାଟଙ୍କର ନିଷ୍ପତ୍ତି ବିରୋଧରେ କେହି ସ୍ୱର ଉତ୍ତୋଳନ କଲେ ନାହିଁ । ଗାଙ୍ଗେୟଙ୍କ ବ୍ୟକ୍ତିତ୍ୱ ନିକଟରେ ସମସ୍ତେ ନତମସ୍ତକ ହେଲେ । ଗାଙ୍ଗେୟଙ୍କର ସତ୍ୟପ୍ରତି ଆଗ୍ରହ, ପିତାଙ୍କ ପ୍ରତି ଗଭୀର ଅନୁରକ୍ତି ସନ୍ଦର୍ଶନରେ ସମସ୍ତେ ପରମ ସନ୍ତୋଷ ଲାଭ କଲେ ।

'ଜୟ ଯୁବରାଜ ଗାଙ୍ଗେୟଙ୍କର ଜୟ' ଧ୍ୱନିରେ ହସ୍ତିନାପୁରର ଗଗନପବନ ପ୍ରତିଧ୍ୱନିତ ହେଲା ।

## ● ବଂଶ ରକ୍ଷା

ନିରବଚ୍ଛିନ୍ନ ସୁଖ ଏ ସଂସାରରେ ଦୁର୍ଲ୍ଲଭ । ସୁଖ ପରେ ଦୁଃଖ, ପୁଣି ଦୁଃଖପରେ ସୁଖ । ଚକ୍ରବର୍ତ୍ତୀ ଶାନ୍ତନୁ ଆରୋଗ୍ୟ ଲାଭ କରିବାପରେ ହସ୍ତିନାପୁରବାସୀ ଆନନ୍ଦ ଉତ୍ସବରେ ସ୍ୱ ସ୍ୱ କାର୍ଯ୍ୟରେ ବ୍ୟସ୍ତ ଥିଲାବେଳେ ଚରମ ଦୁର୍ଯୋଗ ଉପସ୍ଥିତ ହେଲା । ପରିବାରବର୍ଗ, ହସ୍ତିନାପୁରବାସୀ ସମସ୍ତଙ୍କୁ ଶୋକ ସାଗରରେ ଭସାଇଦେଇ ସମ୍ରାଟ ଇହପୁରରୁ ଯାତ୍ରୀହେଲେ । ପୁଣି ବିଷାଦ ଘନ ହସ୍ତିନାର ଆକାଶ ଆଚ୍ଛନ୍ନ କଲା । ସମ୍ରାଜ୍ଞୀ ସତ୍ୟବତୀ ଦୁଃଖରେ ଭାଙ୍ଗିପଡ଼ିଲେ । ପିତୃପ୍ରାଣ ଭୀଷ୍ମ ସେପରି ଦୁଃଖର ଘୋର ସାଗରରେ ନିମଗ୍ନ ହେଲେ । ଆଉ ହସ୍ତିନାବାସୀ ସେହିପରି ପିତୃହରା ହୋଇପଡ଼ିବାର ଅନୁଭବ କଲେ ।

ଦୁଃଖ ଯେତେ ଉତ୍କଟ ହେଉନା କାହିଁକି ଭୀଷ୍ମ ସେଥିରେ ବିଚଳିତ ହେବାର ବ୍ୟକ୍ତି ନ ଥିଲେ । ଅବଶ୍ୟ ସାମୟିକ ଦୁଃଖରେ ସେ ମୁହ୍ୟମାନ ହୋଇପଡ଼ିଥିଲେ । ଏ ଏ ଅବସ୍ଥା ଶୀଘ୍ର ଦୂରହେଲା । ପିତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ସମାପିତ ହେବାପରେ ସେ ରାଜ୍ୟଶାସନ ରୂପ ଗୁରୁଦାୟିତ୍ୱ ଗ୍ରହଣ କଲେ । ପୂର୍ବ ନିଷ୍ପତ୍ତି ଅନୁସାରେ ଚିତ୍ରାଙ୍ଗଦ ହସ୍ତିନାରେ ରାଜାହେଲେ ସତ, ମାତ୍ର ସେ ଅଳ୍ପବୟସ୍କ ଓ ରାଜ୍ୟ ଶାସନର ଅଭିଜ୍ଞତା ତାଙ୍କର ନ ଥିଲା । ଏପରି ଅବସ୍ଥାରେ କୁରୁସାମ୍ରାଜ୍ୟର ଏକ ସୁଦୃଢ଼ ସ୍ତମ୍ଭରୂପେ ଭୀଷ୍ମ ନିଜର ପୂର୍ବ ପ୍ରତିଶ୍ରୁତି ଅନୁସାରେ ରାଜ୍ୟ ଶାସନରେ ମନ ଦେଲେ । ତାଙ୍କର ବଳିଷ୍ଠ ନେତୃତ୍ୱରେ ଶାସନକାର୍ଯ୍ୟ ସୁରୁଖୁରୁ ରୂପେ ଚାଲିଲା ।

ଦୁଃଖ ଦେବେ ଏତାଙ୍କ ଆଉ ନାହିଁ । ଚିତ୍ରାଙ୍ଗଦ ସିଂହାସନ ଆରୋହଣ କରିବାର ଅଧିକ କାଳ ନଯାଉଣୁ ଏକ ସୀମାନ୍ତ ସଂଘର୍ଷରେ ତାଙ୍କର ମୃତ୍ୟୁ ଘଟିଲା । ତାଙ୍କର ଏହି ଅକାଳ ବିୟୋଗପରେ ଦେବବ୍ରତର ପରାମର୍ଶ ଅନୁସାରେ ତାଙ୍କର କନିଷ୍ଠ ଭ୍ରାତା ବିଚିତ୍ରବୀର୍ଯ୍ୟ ସିଂହାସନ ଆରୋହଣ କଲେ ।

ପତି ଓ ପୁତ୍ର ଜଣକ ପରେ ଜଣେ ସେପୁରର ଯାତ୍ରୀ ହେଲେ । ଏହା ସାମ୍ରାଜ୍ଞୀ ସତ୍ୟବତୀଙ୍କ ପ୍ରାଣରେ ଯେଉଁ ଗଭୀର ଦୁଃଖ ଦେଇଥିଲା ତାହା ବର୍ଣ୍ଣନା କରିବା ଅସମ୍ଭବ । ଅବଳା ହେଲେ କ'ଣ ହେଲା ତାଙ୍କର ମାନସିକ ଦୃଢ଼ତା ଥିଲା ଅନନ୍ୟ ସାଧାରଣ । ଆର୍ଯ୍ୟ-ପୁତ୍ର ଜୀବିତ ଥିବା ବେଳେ ଥରେ କଥା ପ୍ରସଙ୍ଗରେ ସେ ରାଣୀଙ୍କୁ କହିଥିଲେ—ଦେଖ, ମହାନ୍ ଭରତ ବଂଶ ଯେପରି ଛିନ୍ନ ନହୁଏ । ସ୍ୱାମୀଙ୍କର ଏହି ଶେଷ ଅଭିଳାଷ ସତ୍ୟବତୀଙ୍କର ହୃଦୟାକାଶରେ ଏକ ଉଜ୍ଜ୍ୱଳ ନକ୍ଷତ୍ର ରୂପେ ଦେଦୀପ୍ୟମାନ ଥାଏ । ବର୍ତ୍ତମାନ କୁଳରକ୍ଷା କରିବାକୁ ହେବ । ସ୍ୱାମୀଙ୍କର ଇଚ୍ଛା ପୂରଣ କରିବାକୁ ପଡ଼ିବ ।

ସାବତ ପୁଅ ହେଲେ ମଧ୍ୟ ଭୀଷ୍ମ ସତ୍ୟବତୀଙ୍କୁ ନିଜର ମାତା ଅପେକ୍ଷା ଅଧିକ ଭକ୍ତି କରନ୍ତି । ତାଙ୍କର ବିନା ପରାମର୍ଶରେ କୌଣସି ଗୁରୁତର କାର୍ଯ୍ୟରେ ହାତ ଦିଅନ୍ତି ନାହିଁ । ଘଟଣାକ୍ରମେ ଜଟିଳ ସମସ୍ୟା ଉପସ୍ଥିତ ହେଲେ ସେ ମାତାଙ୍କ ସହିତ ବସିକରି ପରାମର୍ଶ କରନ୍ତି ଏବଂ ସମସ୍ୟାର ସମାଧାନ କରିଥାନ୍ତି । ଏପରି ସମୟରେ କୁରୁବଂଶର ଅନ୍ୟଜଣେ ହିତାକାଙ୍କ୍ଷୀ ମୁନି ଦ୍ୱୈପାୟନ ବାରମ୍ବାର ଉପସ୍ଥିତ ଥାନ୍ତି । ମାତା ସତ୍ୟବତୀଙ୍କର ପୁତ୍ର ଦ୍ୱୈପାୟନଙ୍କ ଉପରେ ଅଗାଧ ବିଶ୍ୱାସ—ଆଉ ତାଙ୍କର ଦୂରଦୃଷ୍ଟି ଓ ଶକ୍ତି ଉପରେ ସମ୍ପୂର୍ଣ୍ଣ ସେ ନିର୍ଭରଶୀଳ । ମୋଟ ଉପରେ କହିବାକୁ ଗଲେ କୁରୁସାମ୍ରାଜ୍ୟର ତିନୋଟି ସ୍ତମ୍ଭ ଭୀଷ୍ମ-ସତ୍ୟବତୀ-କୃଷ୍ଣଦ୍ୱୈପାୟନ । ଏହି ତ୍ରିମୂର୍ତ୍ତିଙ୍କର ବହୁତ ଆଲୋଚନା ପରେ କର୍ତ୍ତବ୍ୟ ନିର୍ଦ୍ଧାରଣ କରାଯାଇଥାଏ ।

ବର୍ତ୍ତମାନ ବିଚିତ୍ରବୀର୍ଯ୍ୟଙ୍କର ବିବାହ ପ୍ରସ୍ତାବ ଉଠିଲା । ଉପଯୁକ୍ତ କନ୍ୟାପାତ୍ରୀ ଖୋଜାପଡ଼ିଲା । ମାତ୍ର କୌଣସି ରାଜା ସମ୍ରାଟଙ୍କର ମାତୃକୁଳ ବିବେଚନାରେ ତାଙ୍କର କନ୍ୟା ବିଚିତ୍ରବୀର୍ଯ୍ୟଙ୍କ ସହିତ ବିବାହ ଦେବାକୁ ରାଜି ହେଲେ ନାହିଁ । ଏକ ବିଷମ ସମସ୍ୟା ଉପସ୍ଥିତ ହେଲା ।

ଯୋଗକୁ ବ୍ରହ୍ମା ଖଣ୍ଡନ୍ତି ନାହିଁ ।

ଏହି ସମୟରେ କାଶୀରାଜାଙ୍କ ତିନି କନ୍ୟା ଅମ୍ବା, ଅମ୍ବିକା ଓ ଅମ୍ବାଳିକାଙ୍କର ସ୍ୱୟମ୍ବର ହେଉଥାଏ । ଭୀଷ୍ମ କୁରୁ ସୈନ୍ୟମାନଙ୍କ ସାହାଯ୍ୟରେ ସ୍ୱୟମ୍ବର ସଭାରୁ ଏହି ତିନି କନ୍ୟାଙ୍କୁ ଅପହରଣ କରି ଆଣିଲେ । ଅବଶ୍ୟ ସେଠାରେ ଉପସ୍ଥିତ ରାଜନ୍ୟବୃନ୍ଦ ଏହାର ଦୃଢ଼ ପ୍ରତିରୋଧ କଲେ । ଏପରିକି ଭୀଷ୍ମଙ୍କୁ ଯୁଦ୍ଧରେ ପରାସ୍ତ କରିବା ପାଇଁ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ଫଳ କିଛି ହେଲା ନାହିଁ—ମହାରଥୀ ଭୀଷ୍ମ ସେମାନଙ୍କୁ ଶୋଚନୀୟ ଭାବରେ ପରାଜିତ କରି କନ୍ୟାମାନଙ୍କୁ ନେଇ ହସ୍ତିନାରେ ପହଞ୍ଚିଲେ ।

ଭୀଷ୍ମଙ୍କର ଇଚ୍ଛା ଥିଲା ଏହି କନ୍ୟାତ୍ରୟଙ୍କ ସହିତ ବିଚିତ୍ରବୀର୍ଯ୍ୟଙ୍କର ବିବାହ କରାଇ ଦେବା । ତାହା ହୋଇପାରିଲା ନାହିଁ । ଅମ୍ବିକା ଓ ଅମ୍ବାଲିକାଙ୍କ ସହିତ ବିଚିତ୍ରବୀର୍ଯ୍ୟଙ୍କର ବିବାହ ମହାସମାରୋହରେ ଅନୁଷ୍ଠିତ ହୋଇଗଲା—ଅମ୍ବା କିନ୍ତୁ ସୃଷ୍ଟିକଲେ ଏକ ବିଷମ ସମସ୍ୟା । ସେ କହିଲେ—

"ଆପଣ ସତ୍ୟବ୍ରତୀ । ଭାରତର ମର୍ଯ୍ୟାଦା ବୃଦ୍ଧନ୍ତି । ମୁଁ ସ୍ୱୟମ୍ବର ପୂର୍ବରୁ ପିତାଙ୍କ ସ୍ୱୀକୃତି ନେଇ ଶାଲ୍ୱ ଦେଶର ରାଜାଙ୍କୁ ବିବାହ କରିବା ପାଇଁ ସ୍ଥିର କରିଥିଲି-ସ୍ୱୟମ୍ବର ସଭାରେ କେବଳ ବରଣମାଳା ଦେବା ବାକି ଥିଲା । ଆପଣ ସେ ସୁଯୋଗ ମୋତେ ଦେଲେ ନାହିଁ । ମୋତେ ଅପହରଣ କରି ଆଣିଲେ । ଏପରି ସ୍ଥଳେ ମୁଁ ଅନ୍ୟଜଣଙ୍କୁ ବିବାହ ହେବି କିପରି ?

ଭୀଷ୍ମ ଅମ୍ବିକାଙ୍କ କଥାର ଗୁରୁତ୍ୱ ଉପଲବ୍ଧି କଲେ ଏବଂ ନାନା ଉପଢୌକନ ସହ ତାଙ୍କୁ ଶାଲ୍ୱ ଦେଶର ରାଜାଙ୍କ ନିକଟକୁ ପଠାଇଦେଲେ । ଶାଲ୍ୱ କିନ୍ତୁ ତାଙ୍କୁ ଗ୍ରହଣ କଲେ ନାହିଁ । ଯୁକ୍ତି ବାଢ଼ିଲେ ସ୍ୱୟମ୍ବର ସଭାରେ ଭୀଷ୍ମଙ୍କ ଦ୍ୱାରା ସେ ପରାସ୍ତ ହୋଇଛନ୍ତି । ଅମ୍ବା ଭୀଷ୍ମଙ୍କର, ମୋର ନୁହେଁ । ମୁଁ ତାଙ୍କଠାରୁ ଏହି କନ୍ୟାଦାନ ଗ୍ରହଣ କରିପାରିବି ନାହିଁ ।

କ୍ରୋଧରେ ଅମ୍ବାଙ୍କର ସାରା ଶରୀର ଶିହରି ଉଠିଲା । ସେ ହସ୍ତିନାରେ ପହଞ୍ଚି ଭୀଷ୍ମଙ୍କ ପ୍ରତି ନାନା କଟୂବାକ୍ୟ ପ୍ରୟୋଗ କଲେ । କହିଲେ ତାଙ୍କ ଜୀବନର ସବୁ ସୁଖ ଶାନ୍ତିର ଅପହର୍ତ୍ତା ହେଉଛନ୍ତି ଗାଙ୍ଗେୟ । ବର୍ତ୍ତମାନ ଏକମାତ୍ର ପନ୍ଥା ସେ ନିଜର ପ୍ରତିଜ୍ଞା ଭଙ୍ଗ କରି ତାଙ୍କୁ ବିବାହ କରିବେ । ଯଦି ଏହା କାର୍ଯ୍ୟରେ ପରିଣତ ନ ହୁଏ ସେ ସାରା ଜୀବନ ଅବିବାହିତ ରହିବେ । ଏହି କ୍ରୂର କର୍ମର ଯଥାର୍ଥ ପ୍ରତିଶୋଧ ନେବେ ।

କି ଭୀଷଣ ସେ ମୂର୍ତ୍ତି ! ସତେ ଯେପରି କ୍ରୁଦ୍ଧ ଫଣିନୀ । ଭୀଷ୍ମ କିନ୍ତୁ ମେରୁପରି ଅଟଳ । କେତେ ଝଡ଼ଝଞ୍ଜା ଏଥିମଧ୍ୟରେ ବହିଗଲାଣି ସେ ସ୍ୱୀୟ କଠୋର ପ୍ରତିଜ୍ଞା ପଥରୁ ଟଳେ ମାତ୍ର ସ୍ଖଳିତ ହୋଇ ନାହାନ୍ତି । ଆଜି କଣ ସେ ସତ୍ୟଭ୍ରଷ୍ଟ ହେବେ । କଦାପି ନୁହେଁ । ସୂର୍ଯ୍ୟ ପଶ୍ଚିମ ଦିଗରେ ଉଦିତ ହୋଇପାରନ୍ତି—ଅତଳ ମହାସାଗର ଶୁଷ୍କ ହୋଇ ଯାଇପାରେ, ଶିଳା ଉପରେ ପଦ୍ମର ବିକାଶ ସମ୍ଭବ ହୋଇପାରେ, ମାତ୍ର ସେ ତାଙ୍କର ପ୍ରତିଜ୍ଞାରେ ଅଟଳ ରହିବେ ।

ମାତା ସତ୍ୟବତୀ ବହୁତ ବୁଝାଇଲେ, "ମା ମୋର, ମୋ ପାଖରେ ରହି । ତୁ ବି ରାଜକନ୍ୟାର ସମ୍ମାନ ପାଇବୁ । ଭୀଷ୍ମଙ୍କ ଛଡ଼ା ଆଉ ଯେଉଁ ବ୍ୟକ୍ତିଙ୍କୁ ବିବାହ କରିବାକୁ କହିବୁ ମୁଁ ତାଙ୍କ ସହିତ ବିବାହ କରିଦେବି । ମା ମୋର ଧନ ମୋର, ମନରୁ ରାଗ ଛାଡ଼ । ମୁଁ କଣ ତୋର ମା ନୁହେଁ ।

ସବୁ ନିଷ୍ଫଳ ହେଲା—ଅମ୍ବା ଅହଙ୍କାରୀ ଫଣିନୀ ପରି ଗର୍ଜି ଉଠି କହିଲା, ମୁଁ କିଛି ଶୁଣିବି ନାହିଁ—ମୋର ଗୋଟିଏ କଥା 'ଗାଙ୍ଗେୟଙ୍କୁ ବିବାହ କରିବି' । କଟେବୁ

ସାଗ୍ରବନ ଅବବାହୃତ ରହୁବ । ମୋପ୍ରତ ଯେଉଁ ଅନ୍ୟାସ୍ନ କରାଯାଇଛୁ ତାର ପ୍ରତିଶୋଧ ନେବ । ଏଠାରେ ମୁଁ କ୍ଷଣେ ରହୁବ ନାହିଁ । ମୋତେ ମୋର ଅଜାଙ୍କ ଘରେ ଛାଡ଼ିଦଅ । କି କରାଳ ସେ ମୂର୍ତ୍ତି ! ସାକ୍ଷାତ୍ ଅଗ୍ନି ଉଦ୍‌ଗୀରଣକାରୀ ଆଗ୍ନେୟଗିରି ! !

ଏଠନ୍ତରେ ଏହି ବବାହ ପ୍ରସଙ୍ଗର ପରିସମାପ୍ତି ଘଟିଲା ନାହିଁ । ଅମ୍ବା ଅଜାଘର-ଠାରୁ ଯାଇ ପହଞ୍ଚିଲେ ପରଶୁରାମଙ୍କ ଆଶ୍ରମରେ । ସେଠାରେ ଅନୁପୂର୍ବକ ସମସ୍ତ କଥା ତାଙ୍କୁ ଜଣାଇ ଅନୁରୋଧ କଲେ, ମହାଭାଗ, ମୋର କରୁଣ କାହାଣୀ ଶୁଣିଲେ ତ । ଆପଣ ଗାଙ୍ଗେୟଙ୍କ ଗୁରୁ । ଆପଣଙ୍କ କଥା ସେ ଅନ୍ୟଥା କରିବେ ନାହିଁ । ମୋର ତାଙ୍କ ସହିତ ଯେପରି ବିବାହ ହୁଏ ତାର ବ୍ୟବସ୍ଥା କରନ୍ତୁ ।

ପରଶୁରାମ ଏହି ଦୁଃଖିନୀ ଯୁବତୀର କରୁଣ କାହାଣୀ ଶୁଣିଲେ । ଦୟାରେ ତାଙ୍କର ହୃଦୟ ବିଚଳିତ ହୋଇଗଲା । ସଙ୍ଗେ ସଙ୍ଗେ ସେ ଖବର ଦେଲେ—

"ସ୍ନେହର ଗାଙ୍ଗେୟ, ବୃନ୍ଦାବନ ମଧ୍ୟରେ ମୁଁ ଯାହା ଅଥବା ବେଗ ଜାତ ଲକ୍ଷ ଅଣ୍ୟମରେ ପହଞ୍ଚିବ । ମୋତେ ସେଠାରେ ଦେଖା କର । ଅମ୍ବାର ପାଣିଗ୍ରହଣ କରିବା ପାଇଁ ପ୍ରସ୍ତୁତ ହୁଅ । ଏହା ଦ୍ୱାରା ରୂପେ କାର ଯେଉଁ ଅପୂରଣୀୟ କ୍ଷତି ହେଛି ତାହା ପୂରଣ ହୋଇପାରେ—ନଚେତ୍ ମୋ ସହିତ ରୁମର ଯୁଦ୍ଧ ଅନିବାର୍ଯ୍ୟ ।

ଗୁରୁଙ୍କର ସମାଦ ! ମୁହୂର୍ତ୍ତକ ମଧ୍ୟରେ ଗାଙ୍ଗେୟ ତାଙ୍କର କାର୍ଯ୍ୟପନ୍ଥା ସ୍ଥିର କରିନେଲେ ।

ଯଥା ସମୟରେ ଗାଙ୍ଗେୟ ମାତା ସତ୍ୟବତୀ ଏବଂ ମହାମୁନି ଦ୍ୱୈପାୟନ ଜାବାଲିଙ୍କ ଅଶ୍ରମରେ ଉପସ୍ଥିତ ହେଲେ ।

ସେଠାରେ ବବାହ ପ୍ରସଙ୍ଗ ଆଲୋଚିତ ହେଲା । ପରଶୁରାମ ନିଜର ପ୍ରତିଜ୍ଞା ଭଗ୍ନକରି ଅମ୍ବାଙ୍କୁ ବବାହ କରିବା ପାଇଁ ଗାଙ୍ଗେୟଙ୍କୁ ପ୍ରବର୍ତ୍ତାଇଲେ । ଗାଙ୍ଗେୟ ଅତି ବିନୀତ ସ୍ୱରରେ ଗୁରୁଙ୍କର ନିର୍ଦ୍ଦେଶ ପ୍ରତ୍ୟାଖ୍ୟାନ କରି କହିଲେ—ପୂଜ୍ୟ ଗୁରୁଦେବ, ପ୍ରତିଜ୍ଞା ଭଗ୍ନ ଅର୍ଥ ମୃତ୍ୟୁ । ମୁଁ ତାହା କଦାପି କରିପାରିବ ନାହିଁ । ଯଦି ମୁଁ ସତ୍ୟପଥରୁ ସ୍ଖଳିତ ହୁଏ ଲୋକେ ମୋତେ ଅଧର୍ମୀ ବୋଲି କହିବେ—ତଦ୍ୱାରା ଧର୍ମର ଗ୍ଲାନି ଘଟିବ । ମୁଁ ଏହା କଦାପି କରି ନ ପାରେ ।"

ତେବେ ମୋ ସଙ୍ଗେ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହୁଅ । ଜ୍ୱଳନ୍ତ ଅଙ୍ଗାର ପରି ଗୁରୁଙ୍କର ଚକ୍ଷୁଦ୍ୱୟ ରକ୍ତବର୍ଣ୍ଣ ।

ତାହା ମୁଁ କରିପାରିବ ନାହିଁ—ଗୁରୁଙ୍କ ସହିତ ଯୁଦ୍ଧ । ତାହା ମଧ୍ୟ ପ୍ରତିଜ୍ଞା ଭଗ୍ନ ସହିତ ସମାନ । ମୁଁ ଯୁଦ୍ଧ କରିବ ନାହିଁ । ଆପଣଙ୍କ ତୀକ୍ଷ୍ଣ ପରଶୁ ନିଅ ନିଅ ଦେଉଛୁ—ମୁଁ ବେକ ଦେଖାଇ ଦେଉଛୁ । ଆପଣ ମୋତେ ହତ୍ୟା କରନ୍ତୁ, ଯାଏ ସମସ୍ତ ଜଞ୍ଜାଳ, ଲଭ-ଯାଉ—ବିନୀତ ସ୍ୱରରେ ଏହା କହି ସେ ଗୁରୁଙ୍କ ଚରଣ ତଳେ ନିଜର ବେକ ଦେଖାଇ ଦେଲେ ।

ସୁରୁ କଣ କରିବେ ସମସ୍ତେ ହତ୍‌ବାକ୍ ହୋଇ ସ୍ଥିର ରହିଥାନ୍ତି । ଏହିକବେଳେ ହସ୍ତିନାରୁ ଏକ ଦୂତ ଆସି ଖବର ଦେଲା—ଦୁର୍ଘଟଣା ଫଳରେ ବିଚିତ୍ରବୀର୍ଯ୍ୟଙ୍କର ମୃତ୍ୟୁ ହୋଇଛି—ଦୁଃଖରେ, ଶୋକରେ ସମସ୍ତେ ମୂହ୍ୟମାନ ହୋଇପଡ଼ିଲେ । ପରଶୁରାମ ପରିସ୍ଥିତିର ଗୁରୁତ୍ୱ ଉପଲବ୍ଧି କରି ଆଦେଶ ଦେଲେ—

ଅମ୍ବା, ଗାଙ୍ଗେୟ ତୁମଙ୍କୁ ବିବାହ କରିବାକୁ ଅସମ୍ମତ । ଏପରି ସ୍ଥଳେ ତୁମେ ତାଙ୍କ ଉପରେ ପ୍ରତିଶୋଧ ନେବା ପାଇଁ ବଦ୍ଧପରିକର । ଇହ ଜନ୍ମରେ ତୁମର ଆଶା ଫଳ ହୋଇପାରିବ ନାହିଁ । ଆର ଜନ୍ମରେ ତୁମେ ଏହାର ପ୍ରତିଶୋଧ ନେବ—ଗାଙ୍ଗେୟଙ୍କୁ ହତ୍ୟା କରିବ ।

ଅମ୍ବା କଣ କହିବାକୁ ଯାଉଥିଲେ—ତାଙ୍କ କଥା ପାଟିରେ ରହିଗଲା । ପରଶୁଧାରୀ ମୂର୍ତ୍ତିକ ମଧ୍ୟରେ ଦ୍ରୁତ ବେଗରେ ଅନ୍ତର୍ହିତ ହୋଇଗଲେ ।

## ● ବଂଶରକ୍ଷା

ହସ୍ତିନା ରାଜପ୍ରାସାଦର ଏକ ସୁସଜ୍ଜିତ କକ୍ଷ । ଏକକୋଣରେ ସାନ ମନ୍ଦିରଟିଏ । ମାତା ସତ୍ୟବତୀଙ୍କ ଆରାଧ୍ୟ ଦେବ ତହିଁ ମଧ୍ୟରେ ବିରାଜିତ । ସମ୍ମୁଖରେ ମୂଲ୍ୟବାନ୍ ରତ୍ନଖଚିତ ଏକ କାଷ୍ଠାସନ । ମହାରାଣୀ ତହିଁ ଉପରେ ଉପବିଷ୍ଟା । ଇଚ୍ଛା ଅନୁସାରେ ପୂଜା ଅର୍ଚ୍ଚନା କରିବାର ସୁଯୋଗ ଦେବାଲାଗି ଗୃହ ମଧ୍ୟରେ ଦେବତାଙ୍କର ଅବସ୍ଥିତି ।

ସତ୍ୟବତୀ ଆସନରେ ବସିଥାନ୍ତି । ମୁଖରେ ବିଷାଦର ଛାୟା । ଶରତ କାଳରେ ନୀଳାକାଶରେ ଧଳା ମେଘର ଖେଳ ଚାଲିଥାଏ--ସୂର୍ଯ୍ୟଦେବତା କେତେବେଳେ ମେଘ କୋଳରେ ଲୁଚିଯାଉଥାନ୍ତି ଓ କେତେବେଳେ ମେଘମୁକ୍ତ ନୀଳାକାଶରୁ ତାଙ୍କ ସ୍ୱଚ୍ଛ କିରଣ ବିତରଣ କରୁଥାନ୍ତି । ପୁଣି ମେଘ ତାଙ୍କୁ ଢାଙ୍କିଦିଏ—ସୂର୍ଯ୍ୟ ଆଉ ଦେଖାଯାନ୍ତି ନାହିଁ । ପୁଣି ଉଜ୍ଜ୍ୱଳ ରୂପ ଧରି ମେଘ କୋଳରୁ ବାହାରି ଆସନ୍ତି—କ୍ଷଣେ ଛାଇ, କ୍ଷଣେ ଖରା । ମନେହୁଏ ଯେତେ ଯେପରି ଦିନମଣି ମେଘ ସହିତ ଲୁଚକାଳି ଖେଳୁଛନ୍ତି ।

ସେହିପରି ଅତୀତର କେତେ ସ୍ମୃତି ମାତା ସତ୍ୟବତୀଙ୍କ ମନେପଡ଼ିଯାଉଛି, ପୁଣି ବିସ୍ମୃତି ଗର୍ଭରେ ଲୀନ ହୋଇଯାଉଛି । କଳିନ୍ଦର ଘାଟ, ଡଙ୍ଗାବୁହା, ମହାମୁନି ପରାଶରଙ୍କ ସହିତ ନିର୍ଜନ ସାକ୍ଷାତ । କୃଷ୍ଣଦ୍ୱୈପାୟନଙ୍କର ଜନ୍ମ । ପିତାଙ୍କ ସହିତ ନିର୍ଜନ ସାକ୍ଷାତ୍ । ମହାରାଜ ଶାନ୍ତନୁଙ୍କ ସହିତ ବିବାହ । ସବୁ ଛାୟାବାଜିପରି ତାଙ୍କର ହୃଦୟ ପଟରେ ଖେଳି ଯାଉଛି । କେତେ ଆଶା ଧରି ସେ ମହାରାଜାଙ୍କର ପାଣି ଗ୍ରହଣ କରିଥିଲେ । ତାଙ୍କର ଆଶା ଥିଲା ସେ ହେବେ ପୁତ୍ରବତୀ । ତାଙ୍କର ପୁତ୍ର ହସ୍ତିନା ରାଜ ସିଂହାସନ ଆରୋହଣ କରିବେ । ସେ ହେବେ ରାଜମାତା । ପିତାଙ୍କ ପରି ପୁତ୍ର ହେବେ ତାଙ୍କର ଅଶେଷ ଯଶର ଅଧିକାରୀ; କୁରୁବଂଶ ଉଜ୍ଜ୍ୱଳ ହେବ । ମହାନ୍ ଚକ୍ରବର୍ତ୍ତୀ ଭରତଙ୍କର ବଂଶ ରକ୍ଷା ହେବ । ସନାତନ ଧର୍ମ ରକ୍ଷା ହେବ । ଶତ୍ରୁଙ୍କପରି ଭୟ

ଯାହାଙ୍କର ଅଭ୍ୟୁଦୟ ତାଙ୍କର ଅନ୍ୟ ଚିନ୍ତା କଣ ? ଏବେ ଦେଖି ତାଙ୍କର ଜୀବନ ସାର୍ଥକ ହେବ ।

ସବୁ ଆଶା ଆଶାରେ ରହିଗଲା । ବଂଶରକ୍ଷା କରିବା ପାଇଁ ତାଙ୍କର ପରମପୂଜ୍ୟ ସ୍ୱାମୀଙ୍କର ଅଭିଳାଷ ସେ ପୂରଣ କରିପାରିଲେ ନାହିଁ । ତାଙ୍କର ଦୁଇପୁତ୍ର ଚିତ୍ରାଙ୍ଗଦା ଓ ବିଚିତ୍ରବୀର୍ଯ୍ୟ ଜଣକପରେ ଜଣେ ପିତାଙ୍କର ଅନୁସରଣ କଲେ । ବିଧବା ବଧୂ ଅମ୍ବିକା ଓ ଅମ୍ବାଳିକା ନୀରବରେ ଅଶ୍ରୁବର୍ଷଣ କରୁଛନ୍ତି । ସେମାନଙ୍କର ଦୟନୀୟ ଅବସ୍ଥା ଦେଖିଲେ ତାଙ୍କର ଛାତି ଫାଟି ଯାଉଛି । ଯେପରି ମନେ ହେଉଛି, ଏହିଠାରେ ହିଁ ଭରତଙ୍କର ବଂଶ ଶେଷ । କୁଳକ୍ଷୟ ଗ୍ଳାନି ତାଙ୍କର କୋମଳ ହୃଦୟକୁ ଗଭୀର ଭାବରେ ଉଦ୍‌ବେଳିତ କରୁଛି । କିପରି ବଂଶ ରକ୍ଷାହେବ ଏହି ଚିନ୍ତାରେ ସେ ମ୍ରିୟମାଣ ।

ଏହି ସମୟରେ ଗାଙ୍ଗେୟ ଆସି ତାଙ୍କର ଚରଣ ବନ୍ଦନା କଲେ । ଆଶୀର୍ବାଦ କରି ସେ ପୁତ୍ରକୁ ଦୁଇ ହସ୍ତରେ ଉଠାଇ ନେଇ ବାଷ୍ପଗଦ୍‌ଗଦ୍ ସ୍ୱରରେ ପଚାରିଲେ—

ପୁତ୍ର କଣ ଠିକ୍ କଲ ?

ସେତେବେଳକୁ କୁଳ ପୁରୋହିତ ଆଚାର୍ଯ୍ୟ ବଶିଷ୍ଠ, ତାଙ୍କର ପିତା ବ୍ରହ୍ମର୍ଷି, ମହାମୁନି ଦ୍ୱୈପାୟନ, ଅଉଜଣେ ଦୁଇଜଣ କୁରୁବୃଦ୍ଧପତି ସେଠାରେ ପହଞ୍ଚି ଯାଇଥାନ୍ତି ।

ଅତି ବିନୀତ ଭାବରେ ଗାଙ୍ଗେୟ ଉତ୍ତର ଦେଲେ, ପୂଜ୍ୟମାତା, ଆଜିପର୍ଯ୍ୟନ୍ତ ମୁଁ କୌଣସି କଥାରେ ଅବାଧ୍ୟ ହୋଇ ନାହିଁ । ଆପଣଙ୍କ ମନରେ ଯେପରି କଷ୍ଟ ନ ହୁଏ ସେଥିପାଇଁ ଏ ଯାବତ୍ ଯତ୍ନସହକାରେ ଚେଷ୍ଟା କରେ ଆସିଛି । ଆଜି କିନ୍ତୁ ମୁଁ ଆପଣଙ୍କ ନିର୍ଦ୍ଦେଶ ରକ୍ଷା କରିପାରୁ ନାହିଁ । ମୁଁ ଯଦି ବିବାହ କରେ, ମୁଁ ଯେ ପ୍ରତିଜ୍ଞାଭ୍ରଷ୍ଟ ହେବି ତା'ନୁହେଁ—ପିତୃଦ୍ରୋହୀ ମଧ୍ୟ ହେବି । ସେପରି ସ୍ଥଳେ ମୋର ନୈତିକ ପତନ ହେବ । ଆଜି ଲୋକଙ୍କର ଯେଉଁ ଶ୍ରଦ୍ଧା ଅଛି ତାହା ତୁଟିଯିବ । ମୋର ପ୍ରତିଜ୍ଞା ପ୍ରତାରଣାରେ ପର୍ଯ୍ୟବସିତ ହେବ । ଏହା କଣ ଆପଣ ଚାହାନ୍ତି ।

କିଛି ସମୟ ପାଇଁ ନୀରବତା ପରିସ୍ଥିତିର ଗାମ୍ଭୀର୍ଯ୍ୟ ବୃଦ୍ଧି କଲା । ଅଗ୍ରଜ ବ୍ରହ୍ମର୍ଷି ବୟୋଜ୍ୟେଷ୍ଠ ବ୍ୟକ୍ତି । ନୀରବତା ଭଗ୍ନ କରି ସେ କହିଲେ—

ଦେଖ ଗାଙ୍ଗେୟ, ତୁମେ ଚିନ୍ତା କରିଥିଲ ସତ୍ୟବତୀଙ୍କ ପୁତ୍ରଙ୍କ ସିଂହାସନ ଆରୋହଣରେ କୌଣସି ବାଧା ସୃଷ୍ଟି କରିବ ନାହିଁ । ସେ ପରିସ୍ଥିତି ଆଉ ନାହିଁ । ଚିତ୍ରାଙ୍ଗଦା ଓ ବିଚିତ୍ରବୀର୍ଯ୍ୟ ପରପୁରକୁ ଗମନ କରିଛନ୍ତି । ପୁଣି ଦାର ପରିଗ୍ରହଣ କରି କୁରୁକୁଳ ରକ୍ଷା କରିବା ପାଇଁ ମାତା ନିଜର ସ୍ୱୀକୃତି ଦେଉଛନ୍ତି । ଏପରି ସ୍ଥଳେ ପ୍ରତିଜ୍ଞା ଭଙ୍ଗର ପ୍ରଶ୍ନ ଉଠୁଛି କେଉଁଠି ?

ଗାଙ୍ଗେୟ ବିନୀତ ଅଥଚ ଦୃଢ଼ ସ୍ୱରରେ ଉତ୍ତର ଦେଲେ—ସତ୍ୟ, ସତ୍ୟ । ପରିସ୍ଥିତିର ପରିବର୍ତ୍ତନରେ ତାହାର ପରିବର୍ତ୍ତନ ହୁଏ ନାହିଁ । ମୋତେ ସେଥିରେ ଅଭ

ଆଜ୍ଞାନୁ ନାହିଁ ମହାଶୟ । ପରଶ୍ରିତର ଗୁରୁତ୍ୱ ମୁଁ ଖୁବ୍ ଭଲ ଭାବରେ ଉପଲବ୍ଧ କରୁଛି, ମାତ୍ର ମୁଁ ନାଚାର ।

ଦ୍ୱୈପାୟନ କହିଲେ, ବତ୍ସ, ତୁମ୍ଭର ବିବେଚନା ଯଥାର୍ଥ ହେଲେ ଆଉ ଗୋଟିଏ ବିଷୟପ୍ରତି ମୁଁ ତୁମର ଦୃଷ୍ଟି ଆକର୍ଷଣ କରିବାକୁ ଚାହେଁ । ମୋର ପିତା, ପିତାମହ, ପ୍ରପିତାମହ ପରଲୋକଗତ । ତେବେ ତୁମେ ମଧ୍ୟ ସେମାନଙ୍କର ପୋଲଙ୍କ ଅନୁସରଣ କରିବ । ସେତେବେଳେ ପିତୃପୁରୁଷଙ୍କୁ ପିଣ୍ଡଦାନ କରିବ କିଏ ? ସେମାନଙ୍କୁ ପାଣିପାଏ ଦେବ କିଏ ? ପିଣ୍ଡୋଦକ ଲୋପ କଣ ହେବ ? ଏହାର ବିହିତ ବ୍ୟବସ୍ଥା କରିବା, କୁଳରକ୍ଷା ସର୍ବଥା କର୍ତ୍ତବ୍ୟ ।

ସେସବୁ ମୁଁ ମାନୁଛି । ସତ୍ୟରକ୍ଷା ଏ ସବୁର ଉପରେ । ଏହି ସତ୍ୟରକ୍ଷା ପାଇଁ ରାମଚନ୍ଦ୍ର ଚଉଦବର୍ଷ ବନ ଗମନ କରିଥିଲେ । ତାଙ୍କର ଅନୁପସ୍ଥିତିରେ ପିତା ଦଶରଥଙ୍କର ମୃତ୍ୟୁ ହେଲା । ଯେଉଁ ଭରତଙ୍କର ସିଂହାସନ ଲାଭର ପଥ ପରିଷ୍କାର କରିବା ପାଇଁ କୈକେୟୀ ଏହି ନିଷ୍ଠୁର ବର ଦଶରଥଙ୍କୁ ମାଗିଥିଲେ, ସେହି ଭରତ ରାମଚନ୍ଦ୍ରଙ୍କୁ ବନବାସରୁ ଫେରାଇ ଆଣିବାକୁ କେତେ ବା ଚେଷ୍ଟା କରି ନ ଥିଲେ । ରାମଚନ୍ଦ୍ର ଫେରିଲେ କି ? ବରଂ କହିଲେ—ମୋର ବନବାସ ଓ ତୁମ୍ଭର ରାଜସିଂହାସନ ଆରୋହଣ ଦ୍ୱାରା ପିତୃସତ୍ୟ ରକ୍ଷା ହେବ । ଯେକୌଣସି ପରିସ୍ଥିତି ଉପୁଜୁ ନା କାହିଁକି ମୁଁ ମୋର ପ୍ରତିଜ୍ଞାରେ ଅଟଳ ରହିବି ।

ପୁଣି ମୀରବତା ।

ଶେଷରେ ଦ୍ୱୈପାୟନ ଦ୍ୱାରା କାଶୀରାଜକନ୍ୟା ଦ୍ୱୟଙ୍କଠାରୁ ପୁତ୍ରସନ୍ତାନ ଉତ୍ପାଦନ କରିବା ନିମିତ୍ତ ତାଙ୍କୁ ଅନୁରୋଧ କରାଗଲା । ନିୟୋଗ ଏକ ଧର୍ମୀୟ ଅନୁଷ୍ଠାନ । ଏଥିରେ କାମ ପ୍ରବୃତ୍ତି ନଥାଏ । କେବଳ ଏହାର ଅନୁଷ୍ଠାନ ପାଇଁ କାଶୀନନ୍ଦିନୀଦ୍ୱୟ ଶରୀର ଦାନ କରିବେ ।

ଏ ପ୍ରସ୍ତାବ ଶୁଣି ଭୀଷ୍ମଙ୍କ ମନେହେଲେ ତେଜସ୍ୱୀନ ଯେପରି ତାଙ୍କୁ ଦଂଶନ କରୁଛନ୍ତି । ସାରା ଆକାଶ ମୁଣ୍ଡରେ ଭାଙ୍ଗି ପଡ଼ୁଛି । ସେ ଦୃଢ଼ସ୍ୱରରେ ଉତ୍ତର ଦେଲେ ନିୟୋଗ ଏକ ପ୍ରଚାର ବିରୁଦ୍ଧ । ମୁଁ ତା କଦାପି କରିପାରିବି ନାହିଁ । ପୁଣି କାଶୀନନ୍ଦିନୀ-ଦ୍ୱୟ ମୋର ଜନନୀ ସ୍ୱରୂପା । ମୁଁ ତାଙ୍କର ଶରୀର ସ୍ପର୍ଶ କରିପାରିବି ନାହିଁ ।

ପୁଣି ନିସ୍ତବ୍ଧତା ।

ବହୁ ତର୍କର ଆଲୋଚନାପରେ ସ୍ଥିର ହେଲା ପିତୃକୁଳରେ ତ ଆଉ କେହି ନାହାନ୍ତି । ମାତୃକୁଳରେ ଭଲ କୌଣସି ବ୍ୟକ୍ତିଙ୍କ ଦ୍ୱାରା ଏହା କରିବାକୁ ହେବ । ଏହାର ତାତ୍ପର୍ଯ୍ୟ କେହି ବୁଝିପାରିଲେ ନାହିଁ ।

କୁଳ ପୁରୋହିତ ଅଗ୍ରଯଁ ବଭ୍ରୁତ ପ୍ରସ୍ତାବଟିକୁ ପରିଷ୍କାର ଭାବରେ ବୁଝାଇ ଦେବାକୁ ଯାଇ କହିଲେ ଦ୍ୱୈପାୟନ ଏହି କାର୍ଯ୍ୟ ସମ୍ପନ୍ନ କରିବେ । ଏଥିରେ ସବ

କାହାର ଆପତ୍ତି ନଥାଏ, ଏହି ନିୟୋଗ ଫଳରେ ଜାତ ପୁତ୍ର ସନ୍ତାନଙ୍କୁ କୁରୁବଂଶର ଯଥାର୍ଥ ଉତ୍ତରାଧିକାରୀ ରୂପରେ ଗ୍ରହଣ କରିବାରେ ଯେଉଁ କୌଣସି ବାଧା ସୃଷ୍ଟି ହେବାର ସମ୍ଭାବନା ନଥାଏ—ତେବେ ମହାମୁନି ଦ୍ୱୈପାୟନଙ୍କୁ ଏଥିରେ ବ୍ରତୀ ହେବାପାଇଁ ଅନୁରୋଧ କରାଯିବ ।

ସେତେବେଳେ ବାର୍ଦ୍ଧକ୍ୟ ଜନିତ ଦ୍ୱୈପାୟନ ସପ୍ତସିନ୍ଧୁରୁ ଅନ୍ୟତ୍ର ଯାଇଥାନ୍ତି । ଏକଥା ଖୁବ୍ ଗମ୍ଭୀର ଭାବରେ ଆଲୋଚିତ ହେଲା । ମାତା ସତ୍ୟବତୀ, ଧର୍ମପୁତ୍ର ଗାଙ୍ଗେୟ, ଉପସ୍ଥିତ କୁରୁଦଳପତି ତଥା ବିଶିଷ୍ଟ ଏ ପ୍ରସ୍ତାବରେ ଉତ୍ତରର ସହିତ ସମର୍ଥନ କଲେ ।

ମହାମୁନି ଦ୍ୱୈପାୟନଙ୍କୁ ସପ୍ତସିନ୍ଧୁ ଆଣିବା ପାଇଁ ସ୍ୱତନ୍ତ୍ର ଲୋକ ପଠାଗଲା । ସେ ଆସିଲେ । ତାଙ୍କୁ ଏହି ପ୍ରସ୍ତାବ ଜଣାଇ ଦିଆଗଲା । ମାତା ସତ୍ୟବତୀ ପୁତ୍ରକୁ ଏହି ପ୍ରସ୍ତାବରେ ରାଜି ହେବା ପାଇଁ କରୁଣ ନିବେଦନ କଲେ ।

ମାତାଙ୍କୁ ସନ୍ତୁଷ୍ଟ କରିବା, ଯେକୌଣସି ବିପଦରେ ସାହାଯ୍ୟ କରିବା ପାଇଁ ଦ୍ୱୈପାୟନ ପ୍ରତିଶ୍ରୁତିବଦ୍ଧ ।

କହିଲେ—ମାତାଙ୍କ ଆଦେଶ ଶିରୋଧାର୍ଯ୍ୟ ।

ଏକ ଜଟିଳ ସମସ୍ୟାର ସମାଧାନ ହୋଇଗଲା । ଆନନ୍ଦରେ, ଶାନ୍ତିରେ ସମସ୍ତେ ସଭାଗୃହ ତ୍ୟାଗ କଲେ ।

ଯଥା ସମୟରେ ଅମ୍ବିକାଙ୍କ ଗର୍ଭରୁ ଧୃତରାଷ୍ଟ୍ର ଓ ଅମ୍ବାଳିକାଙ୍କ ଗର୍ଭରୁ ପାଣ୍ଡୁ ଜନ୍ମଲାଭ କଲେ । ପୁତ୍ରଦ୍ୱୟଙ୍କ ମୁଖ ଦେଖି ମାତା ସତ୍ୟବତୀ ବିଶେଷ ଆନନ୍ଦିତା ହେଲେ ନାହିଁ । ଧୃତରାଷ୍ଟ୍ର ଜନ୍ମାନ୍ଧ । ରାଜବଂଶର ପରମ୍ପରା ଅନୁସାରେ ସେ ରାଜା ହୋଇପାରିବେ ନାହିଁ । ପାଣ୍ଡୁ ଜନ୍ମରୁ ଦୁର୍ବଳ । ସେ ଯେ ଦୀର୍ଘାୟୁ ହୋଇ ରାଜ୍ୟ ଶାସନ କରିପାରିବେ ଏ ବିଷୟରେ ତାଙ୍କ ମନରେ ସନ୍ଦେହ ହେଲା ।

ଯାହାହେଉ ଭୀଷ୍ମ ଅତି ସ୍ନେହରେ ଶିଶୁପୁତ୍ରଟିକୁ ପାଳନ କଲେ । ସମୟ କ୍ରମେ ପାଣ୍ଡୁ ବଡ଼ ହୋଇ ରାଜ୍ୟଭାର ଗ୍ରହଣ କଲେ । ତାଙ୍କର ଶାସନରେ ହସ୍ତିନା ସମୃଦ୍ଧିମନ୍ତ ହେଲା । ଏହାମଧ୍ୟରେ ଧୃତରାଷ୍ଟ୍ର ଗାନ୍ଧାରୀଙ୍କୁ ଓ ପାଣ୍ଡୁ ବସୁଦେବଙ୍କ ଭଉଣୀ କୁନ୍ତୀଙ୍କୁ ବିବାହ କରି ସାରିଥାନ୍ତି । ପାଣ୍ଡୁଙ୍କର ଅନ୍ୟ ସ୍ତ୍ରୀର ନାମ ମାଦ୍ରୀ ।

ପାଣ୍ଡୁ ତାଙ୍କର ଉତ୍ତମ ଚରିତ୍ର ଯୋଗୁଁ ଲୋକପ୍ରିୟ ହୋଇଥିଲେ । ଦୁର୍ଭାଗ୍ୟବଶତଃ ଏକ ଋଷିଙ୍କର ଅଭିଶାପ ଫଳରେ ସେ ଜୀବନରେ କୌଣସି ଆନନ୍ଦ ଉପଭୋଗ କରିପାରିଲେ ନାହିଁ । ହସ୍ତିନାପୁରରେ ରହିବା ତାଙ୍କ ପକ୍ଷରେ ଅସମ୍ଭବ ହେଲା । ସେ ହିମାଳୟର ଶାନ୍ତିପୂର୍ଣ୍ଣ ବନପ୍ରଦେଶରେ ଦୁଇ ସ୍ତ୍ରୀଙ୍କ ସହିତ ବାସକଲେ । ସ୍ୱାମୀଙ୍କର ଇଚ୍ଛା ଅନୁସାରେ ବିଭିନ୍ନ ଦେବତାଙ୍କ ଆଶୀର୍ବାଦ ଫଳରେ କୁନ୍ତୀ ଓ ମାଦ୍ରୀଙ୍କଠାରୁ ପାଞ୍ଚଟି ପୁତ୍ର ଜାତ ହେଲେ । ଯୁଧିଷ୍ଠିର, ଭୀମ, ଅର୍ଜୁନ ଓ ଯାଆଁଳା ଭାଇ ନକୁଳ, ସହଦେବ ।

ମାତା ସତ୍ୟବତୀ ଆଶା ପୋଷଣ କରିଥିଲେ ପାଣ୍ଡୁ ପୁନର୍ବାର ତାଙ୍କର ଶ୍ରେଷ୍ଠ କୃତି ବନବାସରୁ ଫେରି ପୁନଶ୍ଚ ରାଜ୍ୟଶାସନ ଭାର ଗ୍ରହଣ କରିବେ । ମାତ୍ର ବିଧିର ବିଧାନ ବିଚିତ୍ର ! ବନବାସରେ [illegible] ପାଣ୍ଡୁଙ୍କର ଅକାଳ ମୃତ୍ୟୁ ହେଲା । ମାଦ୍ରୀ ସ୍ୱାମୀଙ୍କର ଚିତାଗ୍ନିରେ ଝାସ ଦେଲେ । ଫଳରେ ଏହି ପାଞ୍ଚଟି ପୁତ୍ରଙ୍କର ଲାଳନପାଳନ ଭାର କୁନ୍ତୀଙ୍କ ଉପରେ ପଡ଼ିଲା ।

ପାଣ୍ଡୁଙ୍କର ମୃତ୍ୟୁରେ ହସ୍ତିନାରେ ସମସ୍ତ ରାଜନୈତିକ ସଙ୍କଟ ଉପସ୍ଥିତ ହେଲା । କୌଣସି କୌଣସି କୁରୁବଂଶପତି ଏହି ପାଞ୍ଚ ଭାଇଙ୍କୁ ପାଣ୍ଡୁଙ୍କର ପୁତ୍ରବୋଲି ଗ୍ରହଣ କରିବାକୁ ଅସ୍ୱୀକୃତ ହେଲେ —ପୁଣି ଏକ ସଙ୍କଟଜନକ ପରିସ୍ଥିତିର ଉଦ୍ଭବ ହେଲା ।

ଏହି ବିଷମ ପରିସ୍ଥିତିରେ ଭୀଷ୍ମ, ମହାମୁନି କୃଷ୍ଣ ଦ୍ୱୈପାୟନଙ୍କର ପରାମର୍ଶରେ ଏହି ପାଞ୍ଚ ଭାଇଙ୍କୁ ପାଣ୍ଡୁଙ୍କର ଯଥାର୍ଥ ସନ୍ତାନରୂପେ ଗ୍ରହଣ କରିଥିଲେ । ଭୀଷ୍ମଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ବିରୋଧରେ ସ୍ୱର ଉତ୍ତୋଳନ କରିବା କାହାରି ପକ୍ଷରେ ସମ୍ଭବ ହେଲା ନାହିଁ ।

ସେତେବେଳକୁ ଧୃତରାଷ୍ଟ୍ରଙ୍କର ଦୁର୍ଯୋଧନ ଦୁଃଶାସନ ପ୍ରଭୃତି କେତୋଟି ପୁତ୍ର ଜାତ ହୋଇଥାନ୍ତି । ଏମାନଙ୍କୁ ସାଧାରଣତଃ କୌରବ ବୋଲି କୁହାଯାଏ । ଆଉ ପାଣ୍ଡୁଙ୍କର ପାଞ୍ଚପୁତ୍ର ପାଣ୍ଡବ ନାମରେ ଅଭିହିତ ।

ପାଣ୍ଡବ ପାଞ୍ଚଭାଇ ଦେଖିବାକୁ ଯେପରି ସୁନ୍ଦର ସେମାନଙ୍କ ଗୁଣ ସେହିପରି ଅନନ୍ୟ ସାଧାରଣ । ସେଥିପାଇଁ ସେମାନେ ସମସ୍ତଙ୍କ ଶ୍ରଦ୍ଧା ଆକର୍ଷଣ କରିପାରିଥିଲେ । ଦୁର୍ଯ୍ୟୋଧନ, ଦୁଃଶାସନ ପ୍ରଭୃତି କୌରବମାନେ ଦୁଷ୍ଟ । ସେଥିପାଇଁ କେହି ସେମାନଙ୍କୁ ସୁଖ ପାଉ ନ ଥିଲେ ।

## ● ହର୍ଷେ ବିଷାଦ

ଭୀଷ୍ମ ଚରିତ୍ର ଅତି ମହତ୍ । ପାପ ଅନ୍ତରର ଭାବ ତାଙ୍କର ଉନ୍ନତ ହୃଦୟକୁ ସ୍ପର୍ଶ କରିପାରି ନ ଥିଲା । ସେ ଉଭୟ ପାଣ୍ଡବ ଓ କୌରବମାନଙ୍କୁ ସମାନ ଚକ୍ଷୁରେ ଦେଖୁଥିଲେ ।

କ୍ରମେ ପିଲାମାନେ ବଡ଼ ହେଲେ । ସେମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ଭଲ ମଣିଷରୂପେ ଗଢ଼ିବା ଥିଲା ଭୀଷ୍ମଙ୍କର ଉଦ୍ଦେଶ୍ୟ । ସେ ଜାଣିଥିଲେ ଉପଯୁକ୍ତ ଶିକ୍ଷା ନ ପାଇଲେ ସେମାନଙ୍କର ଅନ୍ତର୍ନିହିତ ଗୁଣାବଳୀର ବିକାଶ ସମ୍ଭବ ହେବ ନାହିଁ । ତେଣୁ ସେ ଜଣେ ଉପଯୁକ୍ତ ଗୁରୁଙ୍କର ଅନ୍ୱେଷଣରେ ଥାଆନ୍ତି । କୃପ ପିଲାମାନଙ୍କୁ ନିଜେ ଅସ୍ତ୍ରଶିକ୍ଷା ଦେଉଥାନ୍ତି ।

ଦିନେ ରାଜକୁମାରମାନେ ଅସ୍ତ୍ର ସାଧନା କରୁଥାନ୍ତି । ଏହି ସମୟରେ ଜଣେ ବ୍ରାହ୍ମଣ ସେଠାରେ ଉପସ୍ଥିତ ହେଲେ । ଏତିକିବେଳେ ଅସ୍ତ୍ରଶିକ୍ଷା ପ୍ରଦାନ ପାଇଁ ସରିଲା ।

ପିଲାମାନେ ଖେଳରେ ମାତିଗଲେ । ଖେଳୁ ଖେଳୁ ହଠାତ୍ ବାଟିଟି ଯାଇ କୂଅରେ ପଡ଼ିଗଲା । କୂଅଟି ଗଭୀର ଗଭୀର । ଅଗାଧଜଳ ପାଣି । ବାଟି ଆସିବ କିପରି ? ସମସ୍ତେ ଏହା ଭାବୁଥାନ୍ତି । ଏହାପରେ ଆଗନ୍ତୁକ ବ୍ରାହ୍ମଣ କହିଲେ ଏହି କଥାକୁ ଏତେ ଭାବିଲେଣି । ଦେଖ ମୁଁ ଏହା କିପରି ଆଣୁଛି । ଏହା କହି ଗୁଚ୍ଛିଏରେ ଶରଟିଏ ଧାରଣ କଲେ, ଆଉ କୂଅ ଭିତରକୁ ମାରିଦେଲେ । ଆଶ୍ଚର୍ଯ୍ୟର କଥା, ସଙ୍ଗେ ସଙ୍ଗେ ଗୁଚ୍ଛ ଗୁଚ୍ଛ ଶର ସଙ୍ଗରେ ଉଠିଆସିଲା ବାଟିଟି । ପିଲାମାନେ ଯାଇ ଏକଥା ଭୀଷ୍ମଙ୍କ ଆଗରେ କହିଲେ । ତାପରେ ବ୍ରାହ୍ମଣଙ୍କର ବିଦ୍ୟା ପରୀକ୍ଷା କରିବା ପାଇଁ ଦୁର୍ଯ୍ୟୋଧନ ନିଜ ମୁଦିଟି କୂଅ ଭିତରକୁ ପକାଇ ଦେଇ ତାହା ଆଣିବା ପାଇଁ ବ୍ରାହ୍ମଣଙ୍କୁ ଅନୁରୋଧ କଲେ । ବ୍ରାହ୍ମଣ ଏପରି ଶରଟିଏ ମାରିଲେ ଯେ ମୁଦିଟି ସଙ୍ଗେ ସଙ୍ଗେ ଉଠିଆସିଲା । ଏ ଆଶ୍ଚର୍ଯ୍ୟ ଘଟଣା ଭୀଷ୍ମଙ୍କ କାନକୁ ଗଲା । ସେ ଧାଇଁଆସି ପଚାରିଲେ ଆପଣ କଣ ଭରଦ୍ୱାଜଙ୍କ ପୁତ୍ର ଦ୍ରୋଣ । ଉତ୍ତର ଆସିଲା—ଆପଣଙ୍କର ଅନୁମାନ ଯଥାର୍ଥ । ସେତେବେଳକୁ ଭୀଷ୍ମ ଦ୍ରୋଣଙ୍କ ଅସ୍ତ୍ରବିଦ୍ୟା ବିଷୟରେ ବହୁତ କଥା ଶୁଣିଥିଲେ । ବର୍ତ୍ତମାନ ପରଶୁରାମଙ୍କ ପ୍ରିୟଶିଷ୍ୟ ସେହି ଅଦ୍ଭୁତ ବ୍ୟକ୍ତିଙ୍କୁ ସମ୍ମୁଖରେ ଉପସ୍ଥିତ । ଆଉ କାଳବିଳମ୍ବ ନକରି ରାଜପୁତ୍ରମାନଙ୍କୁ ଅସ୍ତ୍ରଶିକ୍ଷା ଦେବା ପାଇଁ ଅନୁରୋଧ କଲେ ।

ଦ୍ରୋଣ ଆନନ୍ଦରେ ଏ ପ୍ରସ୍ତାବରେ ରାଜି ହେଲେ ।

ସେହି ଦିନଠାରୁ ପାଣ୍ଡବ ଓ କୌରବମାନଙ୍କ ଗୁରୁ ହେଲେ ଦ୍ରୋଣ—ପୂରାନାମ ଦ୍ରୋଣାଚାର୍ଯ୍ୟ ।

ଦ୍ରୋଣ ଥିଲେ ମହାନ ଅସ୍ତ୍ରଗୁରୁ । ତାଙ୍କର ପାଖରେ ରାଜକୁମାରମାନେ ଅସ୍ତ୍ରଶିକ୍ଷା କଲେ । ଶିକ୍ଷା ସମାପ୍ତ ହେଲା । କିଏ କେତେଦୂର ପାରଦର୍ଶିତା ଲାଭ କରିଛନ୍ତି ତାହା ପରୀକ୍ଷା କରାଗଲା । ସେଥିରେ ଦେଖାଗଲା ଅର୍ଜୁନ ଧନୁର୍ବିଦ୍ୟାରେ ଓ ଭୀମ ମଲ୍ଲ-ବିଦ୍ୟାରେ ଧୁରୀଣ ହୋଇଛନ୍ତି ।

ପାଣ୍ଡବ ପାଞ୍ଚଭାଇ କେବଳ ଯେ ଅସ୍ତ୍ରବିଦ୍ୟାରେ ପାରଦର୍ଶିତା ଲାଭ କରିଥିଲେ ତା ନୁହେଁ, ସେମାନଙ୍କର ଅମାୟିକ ବ୍ୟବହାର, ଚାଲିଚଳନ ସମସ୍ତଙ୍କୁ ମୁଗ୍ଧ କରିଥିଲା । ବଡ଼ଭାଇ ଯୁଧିଷ୍ଠିର ଥିଲେ ସାକ୍ଷାତ ଧର୍ମଦେବତା-ଅନ୍ୟାୟ ଅନୀତି ତାଙ୍କୁ ସ୍ପର୍ଶ କରି ନ ଥିଲା । କି ମଧୁର କଥା ! ଯେ ଶୁଣୁଥିଲା ମୁଗ୍ଧ ନହୋଇ ରହିପାରୁ ନ ଥିଲେ ।

ଏଣେ ଭୀଷ୍ମଙ୍କର ବୟସ ବଢ଼ିଚାଲିଥାଏ । ତଥାପି ତାଙ୍କର ଦେହପ୍ରତି ଭ୍ରୂକ୍ଷେପ ନଥାଏ । ଏତେଦୀର୍ଘ ଦିନ ଧରି ସେ କୁରୁ ସିଂହାସନର ମହତ୍ତ୍ୱ ରଖି ଆସିଛନ୍ତି । ତାଙ୍କର ପ୍ରତିଜ୍ଞା ଅନୁସାରେ ଚିତ୍ରାଙ୍ଗଦ, ବିଚିତ୍ରବୀର୍ଯ୍ୟ ଜଣକ ପରେ ଜଣେ ରାଜସିଂହାସନରେ ଆରୋହଣ କରିଥିଲେ । ଅତନ୍ଦ୍ର ଭାବରେ ସେ ସେମାନଙ୍କ ପଛରେ ଠିଆ ହୋଇଛନ୍ତି ସେପରି ଅଚଳ ମହାମେରୁ । ତାଙ୍କର ନିଷ୍ଠା, ତେଜ, ବୀର୍ଯ୍ୟ ଦ୍ୱାରା ସେପରି ସେ ସମସ୍ତଙ୍କୁ ଡରାଇ ରଖିଥାନ୍ତି । ସେଥିଲାଗି ତାଙ୍କ ଉପସ୍ଥିତିରେ କୌରବ ସାମ୍ରାଜ୍ୟର ମହତ୍ତ୍ୱ [illegible]

ଭୀଷ୍ମ ତାଙ୍କର ଦୂରଦୃଷ୍ଟି ବଳରେ ଯାହା ଆଶଙ୍କା କରିଥିଲେ ତାହା ହିଁ ହେଲା । ଯୁଧିଷ୍ଠିର ଯୁବରାଜ ହେଲା ଦିନଠାରୁ ଦୁର୍ଯ୍ୟୋଧନ, ଦୁଃଶାସନ, କର୍ଣ୍ଣ, ଶକୁନି ପ୍ରଭୃତି ସ୍ୱାର୍ଥ ଚକ୍ରାନ୍ତ ଆରମ୍ଭ କରିଦେଲେ—କିପରି ଏହି ପାଞ୍ଚ ଭାଇଙ୍କର ସର୍ବନାଶ କରିବେ, କିପରି ରାଜ ସିଂହାସନ ବଳପୂର୍ବକ ଅଧିକାର କରିବେ । ତେବେ ଭୀଷ୍ମ ଥିବା ପର୍ଯ୍ୟନ୍ତ ଏହା କ'ଣ ସମ୍ଭବ ?

ଏ ଜଗତରେ ସବୁ ସମ୍ଭବ । ପ୍ରଥମେ ପ୍ରଥମେ ଏହି ସ୍ୱାର୍ଥ ଚକ୍ରାନ୍ତକାରୀମାନେ ଭୀଷ୍ମଙ୍କୁ ଭୟ କରୁଥିଲେ । ଯେତେବେଳେ ଅର୍ଥର ମୋହ, କ୍ଷମତାର ନିଶା ଲୋକକୁ ଘାରେ ସେ ସେତେବେଳେ ବିବେକ ବର୍ଜିତ କାର୍ଯ୍ୟ କରିବାକୁ ପଶ୍ଚାତ୍ପଦ ହୁଏ ନାହିଁ ।

ଦୁର୍ଯ୍ୟୋଧନଙ୍କର ମାତୁଳ ଶକୁନି ସବୁପ୍ରକାର କୁମନ୍ତ୍ରଣାର ଗୁରୁ । ତାଙ୍କରି ପରାମର୍ଶରେ ସ୍ଥିର ହେଲା ଯେ ପାଣ୍ଡବମାନଙ୍କୁ ଜୀବନରେ ମାରିଦେବା । ତେବେ ହସ୍ତିନା-ପୁରରେ ତାହା ସମ୍ଭବ ହେବ ନାହିଁ । କାରଣ ପଣ୍ଡାମାନଙ୍କର ହତ୍ୟାକାଣ୍ଡ ହେବ ଏହାର ଯୋଜନା ସେ ନଗର ଭିତରେ ଓ ବନ୍ଧୁମାନଙ୍କ ନିକଟରେ ପ୍ରକାଶ କଲେ । ତାହା ଯେ ଜନା । ସମସ୍ତେ ଶକୁନିଙ୍କ ବୁଦ୍ଧିର ପ୍ରଶଂସା କରିଥିଲେ ନାହିଁ ।

ଯୋଜନାର ଦୁଇ ତିନି ଦିନ ପରେ ଯୁଧିଷ୍ଠିର ରାଜକାର୍ଯ୍ୟରେ ବ୍ୟସ୍ତ ଥାନ୍ତି, ସନ୍ଧ୍ୟାରେ ବିଦୁର ଆସି ଜଣେ ଲୋକ ଦ୍ୱାରା ଗୁପ୍ତରେ ତାଙ୍କୁ ଡକାଇ ପଠାଇଛନ୍ତି ।

ବିଦୁର ପାଣ୍ଡବମାନଙ୍କର କକା । ଧୃତରାଷ୍ଟ୍ର ହେଉଛନ୍ତି ସର୍ବଜ୍ୟେଷ୍ଠ ରାଜ-କୁମାର । ବିଦୁର ଥିଲେ ସେମାନଙ୍କର ସାନଭାଇ । ଦାସୀ ଗର୍ଭରୁ ଜନ୍ମ । ଶିକ୍ଷାରେ ଶ୍ୟାମଳ ବର୍ଣ୍ଣ ହେଲେ ହେଁ ସେ ସୁନ୍ଦର; କେବଳ ରୂପ ନୁହେଁ ସ୍ୱଭାବ ଓ ଆଚରଣ ସୁନ୍ଦର । ତାଙ୍କର ବୁଦ୍ଧି ଓ ଦୂରଦୃଷ୍ଟି ଅସାଧାରଣ । ଏକ ଜଟିଳ ସମସ୍ୟାରେ ଭୀଷ୍ମ ମଧ୍ୟ ତାଙ୍କର ପରାମର୍ଶ ଗ୍ରହଣ କରନ୍ତି । ତାଙ୍କର ନମ୍ରତା, ନିର୍ମଳ ବ୍ୟବହାରରେ ସମସ୍ତେ ମୁଗ୍ଧ । ସେ ପାଣ୍ଡବମାନଙ୍କର ହିତୈଷୀ ଥିଲେ । ଦୁର୍ଯ୍ୟୋଧନ, ଦୁଃଶାସନ ପ୍ରଭୃତିଙ୍କର ଷଡ଼ଯନ୍ତ୍ରରୁ ସେମାନଙ୍କୁ କିପରି ରକ୍ଷା କରିବେ ଏହା ହିଁ ସେ ସବୁବେଳେ ଚିନ୍ତା କରୁଥାନ୍ତି ।

ଆଦେଶ ପାଳନ କରି ଯୁଧିଷ୍ଠିର କକାଙ୍କ ସହିତ ଆସିଲେ । ବାଟରେ ବିଦୁର କହିଲେ ଯେ କାଲି ଶକୁନିଙ୍କ ପରାମର୍ଶରେ ଦୁର୍ଯ୍ୟୋଧନ ତୁମମାନଙ୍କୁ ମାରିବା ପାଇଁ ନାନା-ଚକ୍ରାନ୍ତରେ ବ୍ୟସ୍ତ । ବିବାଦ ସହିତ ଯଥାର୍ଥ । ଦେଖିଦେଲେ ଜାଣିବ ସେ ଏକଥା ମନେ ରଖନ୍ତୁ । ଆହ ମଧ୍ୟ ଆଶ୍ୱାସନା ଦେଇ କହିଲେ ଯେ ସେ ନିଜର ଜୀବନ ବିପଦରେ ପକାଇ ସେମାନଙ୍କୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ।

ଧୃତରାଷ୍ଟ୍ରଙ୍କ ନିକଟରେ ପହଞ୍ଚି ଯୁଧିଷ୍ଠିର ଦେଖିଲେ ପିତାମହ ଭୀଷ୍ମ ସେଠାରେ ଉପସ୍ଥିତ ଅଛନ୍ତି । ମୁଖମଣ୍ଡଳ ଗମ୍ଭୀର, ଚକ୍ଷୁରୁ ବିରକ୍ତିର ଚିହ୍ନ ସୁସ୍ପଷ୍ଟ ।

ପ୍ରଥମେ ପିତାମହଙ୍କର ଚରଣ ବନ୍ଦନା କରି ଯୁଧିଷ୍ଠିର ରାଜାଙ୍କ ଚରଣତଳେ ସାଷ୍ଟାଙ୍ଗ ପ୍ରଣିପାତ ହେଲେ । ପଦଶବ୍ଦରୁ ଧୃତରାଷ୍ଟ୍ର ବୁଝିପାରିଲେ ଯୁଧିଷ୍ଠିର ଆସିଛନ୍ତି । ସେ ତାଙ୍କୁ ଚପିବାକୁ କହି ଆରମ୍ଭ କଲେ—

ଶୁଣିବ କ'ଣ ଘଟିଛି ଶୁଣିଛୁ ତ ବାପ—ଅଙ୍ଗଅଙ୍ଗ ହୋଇ ଅନ୍ଧରାଜା ପଚାରିଲେ ।

ହଁ, ଆମେ ଆପଣଙ୍କୁ ଗାଦିଚ୍ୟୁତ କରିବୁ, ଆଉ ଆମର ଭାଇ ଦୁର୍ଯ୍ୟୋଧନ, ଦୁଃଶାସନ ପ୍ରଭୃତିଙ୍କୁ ସେମାନଙ୍କ ନ୍ୟାଯ୍ୟ ସମ୍ପତ୍ତିରୁ ବଞ୍ଚିତ କରିବୁ—ଯୁଧିଷ୍ଠିର ବ୍ୟଥିତ ଭାବରେ ଉତ୍ତର ଦେଲେ ।

ହଁ ବାପ, ସେହିକଥା । ଏହି କେତେଦିନ ହେବ ମୁଁ ଲକ୍ଷ୍ୟ କରୁଛି ଦୁର୍ଯ୍ୟୋଧନ ଆଉ ତାର ବନ୍ଧୁମାନେ ବଡ଼ ପ୍ରତିହିଂସାପରାୟଣ ହୋଇପଡ଼ୁଛନ୍ତି । ତୁମର ଓ ତୁମଭାଇମାନଙ୍କର ପ୍ରଶଂସା ସେମାନେ ସହିପାରୁ ନାହାନ୍ତି । ସେଥିପାଇଁ ଭାବୁଥିଲି ··ସ୍ୱବର ସ୍ମାବଳ୍ ହେଉ ଆଉ କିଛି କହିପାରିଲେ ନାହିଁ ।

ଅନ୍ଧ ରାଜାଙ୍କର ହୃଦୟରେ କେପରି ଯନ୍ତ୍ରଣାର ନିଆଁ ଜଳୁଛି ଯୁଧିଷ୍ଠିର ସହଜେ ବୁଝିପାରିଲେ । ନିଜର ମନୋଭାବ ଲୁଚିରଖି ଏବଂ ଏହି ଅଶାନ୍ତିରୁ ତାଙ୍କର ପରମପୂଜ୍ୟ ପିତୃତୁଲ୍ୟ ଧୃତରାଷ୍ଟ୍ରଙ୍କୁ ରକ୍ଷା କରିବାପାଇଁ ସେ କହିଲେ—

ମନୋଭାବ ପ୍ରକାଶ କରନ୍ତୁ, ନିର୍ଦ୍ଦେଶ ଦିଅନ୍ତୁ । ଆପଣଙ୍କର ଆଦେଶ ପାଳନ କରିବା ପାଇଁ ମୁଁ ପ୍ରସ୍ତୁତ ।

ଭଗ୍ନକଣ୍ଠରେ ମୁଖମଣ୍ଡଳରେ ହାତ ବୁଲାଇ ବୁଲାଇ ଧୃତରାଷ୍ଟ୍ର କହିଲେ କିଛିଦିନ ପାଇଁ ତୁମେ ଯଦି ଯୁବରାଜପଦ ଛାଡ଼·· ।ଆଉ କିଛି ତାଙ୍କ କଣ୍ଠରୁ ବାହାରିଲା ନାହିଁ ।

ସେଥିପାଇଁ ମୁଁ ପ୍ରସ୍ତୁତ ପିତୃଦେବ ! ଆପଣ ଓ ପିତାମହ ମୋତେ ଏ ପଦ ଦେଇଥିଲେ । ବର୍ତ୍ତମାନ ଯଦି କହୁଛନ୍ତି କିଛିଦିନ ପାଇଁ ତାହିଁକି ସବୁଦିନ ପାଇଁ ମୁଁ ଯୁବରାଜପଦ ଛାଡ଼ି ଦେବାପାଇଁ ପ୍ରସ୍ତୁତ ।

ନା ନା, ସେକଥା ମୁଁ କହୁ ନାହିଁ । ତୁମେ ତ ଜାଣ ଆମରାଜ୍ୟରେ ବାରୁଣାବନ୍ତ କେପରି ସୁନ୍ଦର ନଗରଟିଏ । ଯଦି ତୁମେ ପାଞ୍ଚଭାଇ କିଛିଦିନ ପାଇଁ ସେଠାକୁ ଯାଆନ୍ତ, ତେବେ ଦୁର୍ଯ୍ୟୋଧନର ରାଗ ଶାନ୍ତ ହୋଇଯାଆନ୍ତା ।

ସେଥିପାଇଁ ମୁଁ ପ୍ରସ୍ତୁତ—ଯୁଧିଷ୍ଠିରଙ୍କର ମୁଖମଣ୍ଡଳରେ ପ୍ରଶାନ୍ତ ।

ଯୁଧିଷ୍ଠିର ସେ ଏତେ ଶୀଘ୍ର ଏଥିରେ ରାଜି ହୋଇଯିବେ—ଧୃତରାଷ୍ଟ୍ର ଚିନ୍ତା କରି ନଥିଲେ । ଦର୍ଭିବାଦ ସେ ଆଶ୍ୱସ୍ତ । କେବଳ ଖାନ୍ତୁଙ୍କ ନୀରବତା ତାଙ୍କ ହୃଦୟକୁ ଗଭୀର ଭାବରେ ଆନ୍ଦୋଳିତ କରୁଥିଲା ।

ବିଦୁର ଜାଣିଥିଲେ ଧୃତରାଷ୍ଟ୍ର ପୁତ୍ରସ୍ନେହରେ ପାଗଳ ହୋଇ ଏପରି ଅନ୍ୟାୟ କାର୍ଯ୍ୟ କରିବାକୁ ଯାଉଛନ୍ତି । ଏହି କେତେ ଦିନ ମଧ୍ୟରେ ଯୁବରାଜ ଭାବରେ ଯୁଧିଷ୍ଠିର

କୌରବ ନ୍ୟାୟ୍ୟ ରାଜ୍ୟର ପରିଚୟ ଦେଉଛନ୍ତି ସେଥିରେ ସମସ୍ତେ ପରିତୃପ୍ତ । ଏପରି ଅବସ୍ଥାରେ ରାଜ୍ୟ ସେହି ପଦବୀରୁ ବହିଷ୍କାର କରିବା ସବୁଠାରୁ ଅନ୍ୟାୟ । ଏହା ଜାଣିଲେ ମଧ୍ୟ ସେ କୌଣସି ପ୍ରତିରୋଧ କଲେ ନାହିଁ । ଏବେ ତ ଧୃତରାଷ୍ଟ୍ର ବସ୍ତୁତଃ ରାଜା । ରାଜାଙ୍କର ଆଦେଶ ବିରୋଧରେ ଯିବା ଉଚିତ ନୁହେଁ । ତାପରେ ସେ ମଧ୍ୟ ଚାହାଁନ୍ତି ପାଣ୍ଡବ ପାଞ୍ଚଭାଇ ହସ୍ତିନାରେ ରହିଲେ ଭ୍ରାତୃ-ବିବାଦ ସୁନିଶ୍ଚିତ । ଏପରିକି ସେମାନଙ୍କ ମଧ୍ୟରେ ଗୋଷ୍ଠୀ-ଗତ ଯୁଦ୍ଧ ମଧ୍ୟ ହୋଇଯାଇପାରେ । ତଦ୍ୱାରା ସେ ଯୁଦ୍ଧରତ ଭାଇମାନଙ୍କର ଅମଙ୍ଗଳ ସାଧିତ ହେବ ତା ନୁହେଁ, କୌରବ ପ୍ରଜାମାନଙ୍କର ରକ୍ତରେ କୁରୁ ସାମ୍ରାଜ୍ୟ କଳଙ୍କିତ ହେବ, କୁରୁବଂଶ ଦୁର୍ବଳ ହୋଇପଡ଼ିବ । ସମଗ୍ର ଆର୍ଯ୍ୟାବର୍ତ୍ତରେ କୌରବମାନଙ୍କର ପ୍ରତିଷ୍ଠା ଲୋପ ହେବ । ଯଦି ପାଣ୍ଡବମାନଙ୍କର ଏହି ସାମୟିକ ଅନୁପସ୍ଥିତି ଫଳରେ ରାଜ୍ୟରେ ଶାନ୍ତି ଆସେ ତେବେ ଶ୍ରେୟସ୍କର । ବୋଧହୁଏ ଏହିସବୁ ଚିନ୍ତାରେ ସେ ପିତାମହଙ୍କ ଆଦେଶର ପ୍ରତିରୋଧ କରିପାରିଲେ ନାହିଁ । ସେ ଯଦି ଜାଣିଥାନ୍ତେ ଯେ ବାରଣାବତରେ ପାଣ୍ଡବକୁଳକୁ ନିଃଶେଷ କରିବା ପାଇଁ ଏହି ଚକ୍ରାନ୍ତର ସୃଷ୍ଟି, ତେବେ ସେ ନିଶ୍ଚିତ ଭାବରେ ଏହି ଅନ୍ୟାୟ ଆଦେଶର ପ୍ରତିରୋଧ କରିଥାନ୍ତେ ।

କିପରି ବାରଣାବତରେ ଦାହ୍ୟ ପଦାର୍ଥରେ ପାଣ୍ଡବମାନଙ୍କ ପାଇଁ ଗୃହ ନିର୍ମାଣ କରାଯାଇଛି, କିପରି ସେ ଗୃହରେ ପାଣ୍ଡବମାନେ ଥିଲାବେଳେ ସେଥିରେ ଅଗ୍ନି ସଂଯୋଗ କରି ସେମାନଙ୍କୁ ଜୀବନ୍ତ ଦଗ୍ଧ କରିବାର ଯୋଜନା ହୋଇଛି, ଏହା ବିଦୁର ବିଶ୍ୱସ୍ତ ସୂତ୍ରରୁ ଜାଣିପାରିଥିଲେ ଏବଂ ସେମାନେ ଏହି ମହା ବିପଦରୁ କିପରି ରକ୍ଷା ପାଇବେ ସେଥିପାଇଁ ଜତୁଗୃହରୁ ଗଙ୍ଗାନଦୀ ପର୍ଯ୍ୟନ୍ତ ସମସ୍ତଙ୍କ ଅଜ୍ଞାତରେ ଏକ ସୁଡ଼ଙ୍ଗ ନିର୍ମାଣ କରାଇଥିଲେ । ଉଦ୍ଦେଶ୍ୟ, ବିପଦ ଉପସ୍ଥିତ ହେବାମାତ୍ରେ ସେମାନେ ଏହି ସୁଡ଼ଙ୍ଗ ବାଟେ ପାଣ୍ଡବମାନେ ନିର୍ଗତ ହୋଇଯାଇବେ । କେବଳ ନୁହେଁ, ସେମାନେ ସୁଡ଼ଙ୍ଗ ଦେଇ ବାହାରିବା ମାତ୍ରେ କିପରି ଗଙ୍ଗାନଦୀ ପାର ହୋଇଯାଇବେ ତାର ବ୍ୟବସ୍ଥା ମଧ୍ୟ କରିଥିଲେ । ବିଦୁରଙ୍କର ଏହି ବ୍ୟବସ୍ଥାଫଳରେ ଜତୁଗୃହରେ ଯେତେବେଳେ ଅଗ୍ନି-ସଂଯୋଗ ହେଲା, ପାଣ୍ଡବ ପାଞ୍ଚଭାଇ ମାତା କୁନ୍ତୀଙ୍କ ସହିତ ନିରାପଦରେ ଗଙ୍ଗାର ଅପରପାର୍ଶ୍ୱରେ ନିର୍ବିଘ୍ନରେ ପହଞ୍ଚିଲେ, ମାତ୍ର ଜଣେ ବାହାରୀ ତାର ପୁତ୍ରମାନଙ୍କ ସହିତ ପୋଡ଼ିହୋଇ ପ୍ରାଣ ହରାଇଲା ।

ଜତୁଗୃହ ପୋଡ଼ି ଭସ୍ମୀଭୂତ ହେଲା । ଅଗ୍ନି ନିର୍ବାପିତ ହେଲାପରେ ଦେଖାଗଲା ଛଅଟି ଦଗ୍ଧ ଶରୀର । ପାଣ୍ଡବ ପାଞ୍ଚଭାଇ ଓ ସେମାନଙ୍କ ମାତା କୁନ୍ତୀ ଯେ ଦଗ୍ଧୀଭୂତ ହୋଇଛନ୍ତି, ଏହା ପ୍ରଚାରିତ ହେଲା ।

ଏପରିଭାବେ ରାଜ୍ୟର ଚାରିଆଡ଼େ ପାଣ୍ଡବମାନେ ଜଳିମରିଗଲେ ବୋଲି ଶୁଣାଗଲା— ଏହା ଶୁଣି ଦୁର୍ଯ୍ୟୋଧନ ଓ ତାଙ୍କର ସାହାଯ୍ୟକାରୀମାନେ ପରମ ପରିତୋଷ ଲାଭକଲେ ।

ଇତିମଧ୍ୟରେ ପାଣ୍ଡବମାନଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମାପନ ହୋଇଗଲା ସିନା, ପାଣ୍ଡବମାନେ ଯେ ନିର୍ବିଘ୍ନରେ ଏଠାରୁ ପାର ହୋଇଯାଇଛନ୍ତି ଏହା ବିଦୁରଙ୍କ ବ୍ୟତୀତ ଅନ୍ୟ କେହି ସେପର୍ଯ୍ୟନ୍ତ ଜାଣିପାରି ନଥିଲେ ।

ଏହି ଦୁର୍ଭାଗ୍ୟ ଘଟଣା ଦାବାଗ୍ନି ପରି ଚାରିଆଡ଼େ ବ୍ୟାପିଗଲା । ଧୃତରାଷ୍ଟ୍ର ଏହା ଶୁଣିଲେ । ଗଭୀର ପୁଷ୍କରିଣୀର ଜଳ ଯେପରି ତଳଦେଶରେ ଥଣ୍ଡା ଥାଏ ଏବଂ ଉପରେ ଉଷ୍ମ ଜଣାଯାଏ ସେହିପରି ଧୃତରାଷ୍ଟ୍ର ଉପରେ ଦୁଃଖିତ ଥିଲେ ମଧ୍ୟ ଅନ୍ତରରେ ଆନନ୍ଦ ଅନୁଭବ କରୁଥିଲେ । ଏଣିକି ତାଙ୍କର ପୁତ୍ର ଦୁର୍ଯ୍ୟୋଧନ ଯେ ନିଷ୍କଣ୍ଟକ ଭାବରେ ରାଜତ୍ୱ କରିପାରିବ, ଏହା ହିଁ ଏହି ଆନନ୍ଦର କାରଣ ।

ପାଣ୍ଡବମାନଙ୍କର ଏହି ଦୁର୍ଦ୍ଦଶାରେ ଭୀଷ୍ମ ଦୁଃଖରେ ସ୍ତମ୍ଭୀଭୂତ ହୋଇଗଲେ । ପିତାମହଙ୍କର ଏହି ଦୁଃଖରେ ବ୍ୟଥିତ ହୋଇ ବିଦୁର ପାଣ୍ଡବମାନେ କିପରି ନିର୍ବିଘ୍ନରେ ଏହି ବିପଦରୁ ଉଦ୍ଧାର ପାଇଛନ୍ତି ଜଣାଇବାରୁ ସେ ଆଶ୍ୱସ୍ତ ହେଲେ ସତ, କିନ୍ତୁ ତାଙ୍କର ମୁଣ୍ଡରେ ଗୋଟିଏ ଚିନ୍ତା ଗଭୀର ଭାବରେ ରେଖାପାତ କଲା । ସେ ନିର୍ଭୀକ ଏପରି ଅନ୍ୟାୟର ଦୃଢ଼ ପ୍ରତିରୋଧ ନ କଲେ, ତାହା ହିଁ ତାଙ୍କର ଦୁଃଖର ପ୍ରଧାନ କାରଣ ।

ଅନେକ ସମୟରେ ଲୋକ ନିଜର ଭୁଲ ସ୍ୱୀକାର କରି ନ ଥାଏ, ବରଂ ତାହାକୁ ଲୁଚାଇବା ପାଇଁ ଆହୁରି ଭୁଲ କରିଚାଲେ । ଭୀଷ୍ମ କିନ୍ତୁ ସେପରି ନ ଥିଲେ । ପାଣ୍ଡବମାନଙ୍କ ମୃତ୍ୟୁରେ ବ୍ୟଥିତ ହୋଇ କୃଷ୍ଣ ଯେତେବେଳେ ତାଙ୍କୁ ପଚାରିଲେ—"ଆପଣଙ୍କ ଉପସ୍ଥିତିରେ ଏମିତି ଘଟଣା କିପରି ସମ୍ଭବ ହେଲା । ସେ ପରିଷ୍କାର ଭାବରେ ସ୍ୱୀକାର କରି କହିଲେ ପରିସ୍ଥିତିର ଚାପରେ ମୁଁ ଏହି ଅନ୍ୟାୟର ପ୍ରତିରୋଧ କରିପାରିଲି ନାହିଁ । ଏହା ବାସ୍ତବରେ ଏକ ବିରାଟ ଭୁଲ । ଯେକୌଣସି ପରିସ୍ଥିତିରେ ଅନ୍ୟାୟର ପ୍ରତିରୋଧ କର୍ତ୍ତବ୍ୟ । ଏଥିରେ ମୁଁ ହେଳା କରିଛି । ମୋର ବିବେକ ବିରୋଧରେ କାର୍ଯ୍ୟ କରିଛି । ସେଥିପାଇଁ ମୁଁ ଅନୁତପ୍ତ ।

## ● ନିଷ୍ପତ୍ତି

ପାଣ୍ଡବମାନେ ଜୀବିତାବସ୍ଥାରେ ଅଛନ୍ତି, ପୁଣି ସ୍ୱୟଂ ଦ୍ରୁପଦଙ୍କ କନ୍ୟା ଦ୍ରୌପଦୀଙ୍କୁ ସ୍ୱୟମ୍ବର ସଭାରେ ଲକ୍ଷ୍ୟଭେଦ ଲାଭ କରିଛନ୍ତି—ଏହି ସମ୍ବାଦ ହସ୍ତିନାପୁରରେ ପହଞ୍ଚିବା କ୍ଷଣି ଆନନ୍ଦର ଲହରୀ ଚାରିଆଡ଼େ ଖେଳିଗଲା । ପାଣ୍ଡବମାନେ ବାରଣାବତରେ ଦଗ୍ଧ ହୋଇଛନ୍ତି । ଏହି ଖବର ଶୁଣିବା ଦିନଠାରୁ ଭୀଷ୍ମ ଦାରୁଣ ଅନ୍ତର୍ଦ୍ଦାହ ମଧ୍ୟରେ କାଳାତିପାତ କରୁଥିଲେ । ସେ ମନେକରୁଥିଲେ ପାଣ୍ଡବମାନଙ୍କର ଏହି ଶୋଚନୀୟ ମୃତ୍ୟୁ ପାଇଁ ପରୋକ୍ଷ ଭାବରେ ସେ ଦାୟୀ, କାରଣ ଧୃତରାଷ୍ଟ୍ର ଯେତେବେଳେ ଯୁଧିଷ୍ଠିରଙ୍କୁ ଯୁବରାଜ ପଦ ଭ୍ରଷ୍ଟ ବାରଣାବତ ଯିବାପାଇଁ ଆଦେଶ ଦେଲେ ସେ ତାର ପ୍ରତିରୋଧ କରିପାରିଲେ ନାହିଁ । ପୁଣି ସେ ମନେକରୁଥିଲେ ଏହି ଘଟନା କୁରୁକୁଳର ଏକ କଳଙ୍କ ବୋଲି ବିବେଚିତ

ହୋଇଥିବ । ବର୍ତ୍ତମାନ ସେ କଳଙ୍କ ଦୂର ହେଲା । ଆଉ ଗୋଟିଏ କଥା । ପାଣ୍ଡବମାନେ ଦ୍ରୌପଦୀଙ୍କୁ ଲାଭ କରିବା ଦ୍ୱାରା ପାଞ୍ଚାଳ ଓ ହସ୍ତିନାପୁର ମଧ୍ୟରେ ବନ୍ଧୁତା ପାଶ ସୁଦୃଢ଼ ହେଲା । ବର୍ତ୍ତମାନ ସମ୍ମିଳିତ ପାଞ୍ଚାଳ ଓ କୁରୁସୈନ୍ୟ ଆର୍ଯ୍ୟାବର୍ତ୍ତରେ ପୂରା ଆଧିପତ୍ୟ ବିସ୍ତାର କରିପାରିବେ । ଏହାଦ୍ୱାରା ଧର୍ମରକ୍ଷା ହୋଇପାରିବ । ସେ ଯେଉଁ ଧର୍ମପାଇଁ ସଂଜୀବନ ସାଧନା କରି ଆସିଛନ୍ତି ତାହା ସଫଳ ହେବ ।

ମହାମନ୍ତ୍ରୀ ବିଦୁର ଓ ରାଜା ଧୃତରାଷ୍ଟ୍ରଙ୍କ ପରାମର୍ଶରେ ସେ ପାଣ୍ଡବମାନଙ୍କୁ ପାଞ୍ଚାଳରୁ ସପତ୍ନୀ ନଗରେ ଆଣିବା ପାଇଁ ଏବଂ ସେମାନଙ୍କୁ ଉପଯୁକ୍ତ ସମ୍ବର୍ଦ୍ଧନା ଜଣାଇବା ପାଇଁ ସ୍ଥିର କଲେ ।

ଭୀଷ୍ମଙ୍କର ଏହି ନିଷ୍ପତ୍ତି ଦୁର୍ଯ୍ୟୋଧନଙ୍କ ମନରେ ଗଭୀର ଆଘାତ ଦେଇଥିଲା । ଏବେ ତ ସେ ଦ୍ରୌପଦୀଙ୍କ ସ୍ୱୟମ୍ବର ସଭାରୁ ଅପମାନିତ ହୋଇ ଫେରିଥିଲେ । ଯେଉଁ ଭୀମ ସ୍ୱୟମ୍ବର ସଭାରେ ସମସ୍ତ ଅଭ୍ୟାଗତ ନରପତିଙ୍କ ସମ୍ମୁଖରେ ଅଛବୁଥ କହି ତାଙ୍କ ପ୍ରତି ତାଚ୍ଛଲ୍ୟ ପ୍ରଦର୍ଶନ କରିଥିଲେ, ତାଙ୍କୁ ସେ ସମ୍ବର୍ଦ୍ଧନା ଜଣାଇବେ — ଏହା କଳ୍ପନାରେ ଚଳନ ନୁହେଁ ଲ ଆଉ ଜଣେ ।

କର୍ଣ୍ଣ, ଶକୁନି, ଅଶ୍ୱତ୍ଥାମା, ଦୁଃଶାସନ ପ୍ରଭୃତିଙ୍କର ଉପସ୍ଥିତିରେ ସେ ପ୍ରସ୍ତାବ ଦେଇଥିଲେ ପାଣ୍ଡବମାନଙ୍କୁ ହସ୍ତିନାପୁରକୁ ଆସିବା ପାଇଁ ସୁଯୋଗ ଦିଆଯିବ ନାହିଁ । ସେହି ପାଞ୍ଚାଳରେ ଯେକୌଣସି ଉପାୟରେ ସେମାନଙ୍କର ବିନାଶ ସାଧନ କରିବାକୁ ପଡ଼ିବ । କର୍ଣ୍ଣ କିନ୍ତୁ ଏହା ଏକ ଦୁର୍ବଳ ପ୍ରସ୍ତାବ ବୋଲି ଏଥିରେ କୌଣସି ଗୁରୁତ୍ୱ ଦେଲେ ନାହିଁ । ଫଳରେ ଭୀଷ୍ମଙ୍କ ନିଷ୍ପତ୍ତି କାଏମ୍ ରହିଲା ।

ପାଣ୍ଡବମାନେ ସସମ୍ମାନେ ହସ୍ତିନାରେ ପ୍ରବେଶ କଲେ । ଦୁର୍ଯ୍ୟୋଧନ ଦେଖିଲେ ଆଉ ତାଙ୍କର ରକ୍ଷା ନାହିଁ । ଯୁଧିଷ୍ଠିର ହସ୍ତିନାପୁରରେ ନିଶ୍ଚିତ ଭାବରେ ରାଜା ହେବେ । ତାଙ୍କର ସ୍ଥାନ ଆଉ ସେଠାରେ ନାହିଁ । ପରୋକ୍ଷ ଭାବରେ ସେ ପିତାଙ୍କୁ କହିଦେଲେ ଯଦି ଯୁଧିଷ୍ଠିର ହସ୍ତିନାର ରାଜସିଂହାସନ ଅଧିକାର କରନ୍ତି ତେବେ ସେ ଆତ୍ମହତ୍ୟା କରିବେ ବା ନଗର ଅ- ଘର ଗାନ୍ଧାରକୁ ଚାଲିଯିବେ ।

ଧୃତରାଷ୍ଟ୍ର ଦୁର୍ବଳ । ପୁତ୍ରର କଥା ଅନ୍ୟଥା କରିବା ତାଙ୍କ ପକ୍ଷରେ ଅସମ୍ଭବ । ସେ ଯାଇ ଭୀଷ୍ମଙ୍କ ଆଗରେ ସବୁକଥା କହି ଦୁର୍ଯ୍ୟୋଧନଙ୍କୁ ହସ୍ତିନାର ରାଜା କରିବା ପାଇଁ ବ୍ୟାକୁଳ ଅନୁରୋଧ କଲେ ।

ଭୀଷ୍ମଙ୍କ ଏକ ପକ୍ଷେ ଏହା ଏକ ଜଟିଳ ସମସ୍ୟା । ଯୁଧିଷ୍ଠିର ପାଣ୍ଡୁଙ୍କର ପୁତ୍ର, ପୁଣି ସବୁ ଗୁଣରେ ପରିପୂର୍ଣ୍ଣ । ଯେଣୁ ସେ ଧର୍ମର ଅବତାର । ସେ ରାଜା ହେଲେ କୁରୁ ସାମ୍ରାଜ୍ୟର ଗୌରବ ଅପ୍ରତିହତ ରହିବ—ଗୋ-ବ୍ରାହ୍ମଣ ଶାନ୍ତିରେ ରହିବେ । ନାରୀମାନଙ୍କର ମର୍ଯ୍ୟାଦା ରକ୍ଷା ହେବ । ବୈଶ୍ୟମାନେ ସେମାନଙ୍କର ବ୍ୟବସାୟ ଅବାଧ

ରୂପେ ଜବାବ ଦେବେ । ଅଗ୍ରଜଗୁରୁଙ୍କ ସୁରକ୍ଷକ ହେବ—ସମସ୍ତେ ମଧ୍ୟମପନ୍ଥା ଗ୍ରହଣ-ପାଳନ କରିବା ଦ୍ୱାରା ଧର୍ମ ଜଗତରେ ଅଭୂତ ଉନ୍ନତି ସାଧିତ ହେବ ।

ଅନ୍ୟପକ୍ଷରେ ଯୁଧିଷ୍ଠିର ରାଜା ହେଲେ ଦୁର୍ଯ୍ୟୋଧନ ଦୁଃଶାସନ ପ୍ରଭୃତି ହସ୍ତିନାପୁର ଛାଡ଼ି ଚାଲିଯିବେ। ସେମାନଙ୍କ ସହିତ ଯିବେ କର୍ଣ୍ଣ, କୃପ, ଅଶ୍ୱତ୍ଥାମା ଓ ଦ୍ରୋଣ । ଏହାଦ୍ୱାରା କୁରୁ ସାମ୍ରାଜ୍ୟ ଦୁର୍ବଳ ହୋଇ ପଡ଼ିବ । ଏହା ବି ହୋଇପାରେ ଅନ୍ଧ ରାଜା ଧୃତରାଷ୍ଟ୍ର ମଧ୍ୟ ରାଜ୍ୟ ଛାଡ଼ି ଚାଲି ଯାଇପାରନ୍ତି । ଏହା ଫଳରେ କୁରୁକୁଳରେ କଳଙ୍କ ରହିବ । ଲୋକେ କହିବେ ବୋଧହୁଏ ତାଙ୍କର ଦୁର୍ବ୍ୟବହାର ଯୋଗୁଁ ଏପରି ଅଘଟନ ଘଟିଲା ।

ଦେଖ ଜଗତେ ସେ । ବରୁରଲେ କୁରୁବଂଶର ମର୍ଯ୍ୟାଦା ରକ୍ଷା କରିବା ପାଇଁ ତାଙ୍କର ଆଜୀବନ ଚେଷ୍ଟା ଯେପରି ବିଫଳ ହୋଇଛି । ଏଯାବତ୍ ତାଙ୍କର ଅନୁମତି ବିରୋଧରେ ପରିବାରର କୌଣସି ବ୍ୟକ୍ତି ସ୍ୱର ଉତ୍ତୋଳନ କରି ପାରୁ ନ ଥିଲେ । ବର୍ତ୍ତମାନ ଆଉ ତା ନାହିଁ । ସେ ଶୁଣିଛନ୍ତି ଯଦି ଯୁଧିଷ୍ଠିରଙ୍କୁ ସେ ରାଜା କରନ୍ତି ତେବେ ତାଙ୍କର ଏହି ନିଷ୍ପତ୍ତି କୌରବ ଭ୍ରାତାମାନେ ମାନିବେ ନାହିଁ । ଏହା କଣ କମ୍ ଔଦ୍ଧତ୍ୟ । ସେ ମନେକଲେ ଯେପରି ସେ ମୃତ ପିତୃପୁରୁଷ । ଆବଶ୍ୟକ ବେଳେ ତାଙ୍କୁ ଆବାହନ କରାଯିବ, ଆଉ ଦରକାର ହେଲେ ତାଙ୍କୁ ଉପେକ୍ଷା କରାଯିବ—ସେ ଆଉ ଭାବି ପାରିଲେ ନାହିଁ । ଚତୁର୍ଦ୍ଦିଗ ତାଙ୍କୁ ଅନ୍ଧକାର ଦେଖାଗଲା ।

କୌଣସି ଜଟିଳ ସମସ୍ୟା ଉପସ୍ଥିତ ହେଲେ ସେ ମାତା ସତ୍ୟବତୀଙ୍କ ସହିତ ପରାମର୍ଶ କରନ୍ତି । ସତ୍ୟବତୀଙ୍କର ସୁଚିନ୍ତିତ ମତ ପ୍ରତି ସେ ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରିଥାନ୍ତି । ଏହି ଅନ୍ଧାରରେ କାଳେ ସେ ଅଲୌକିକ ଆଲୋକ ବର୍ତ୍ତିକା ଜଳାଇ ପାରନ୍ତି, ଏହି ଆଶାରେ ସେ ମାତାଙ୍କ ନିକଟରେ ଉପସ୍ଥିତ ହୋଇ ତାଙ୍କର ଚରଣ ବନ୍ଦନା କଲେ ।

ଉଭୟ ମାତା ପୁତ୍ର ଏହି ଗୁରୁତର ସମସ୍ୟା ବିଷୟରେ ବହୁସମୟ ପର୍ଯ୍ୟନ୍ତ ଆଲୋଚନା କଲେ । ଶେଷରେ ସ୍ଥିର ହେଲା ଯୁଧିଷ୍ଠିର ହସ୍ତିନାର ରାଜା ହେବେ ଏବଂ ଦୁର୍ଯ୍ୟୋଧନ ଯୁବରାଜ ପଦରେ ଅଭିଷିକ୍ତ ହେବେ । ପରିଣାମ ଯାହାହେଉ ପଛେ ଧର୍ମପଥରୁ, ସତ୍ୟପଥରୁ ଯେଉଁଥି ପାଇଁ ସାରାଜୀବନ ସେମାନେ ଚେଷ୍ଟାକରି ଆସୁଛନ୍ତି, ସେଥିରୁ ତିଳେମାତ୍ର ବିଚ୍ୟୁତ ହେବେ ନାହିଁ ।

ଏହି ନିଷ୍ପତ୍ତି କାର୍ଯ୍ୟକାରୀ କରାଇବା ଉଦ୍ଦେଶ୍ୟରେ ରାଜ୍ୟସଭା ଆହୂତ ହେଲା । ପ୍ରତିଷ୍ଠିତ ବ୍ରାହ୍ମଣ, ମହାମାନ୍ୟ ମୁନିଋଷି, ଜ୍ଞାତିସମ୍ପନ୍ନ କୁରୁଦଳପତିମାନେ ଯଥା ସମୟରେ ସଭାଗୃହ ମଣ୍ଡନ କଲେ ।

ସମସ୍ତେ ଉପସ୍ଥିତ ହେବା ପରେ ପିତାମହ ଭୀଷ୍ମ ତାଙ୍କର ସ୍ୱଭାବ ସୁଲଭ ଗମ୍ଭୀର ଅଥଚ ଦୃଢ଼ ସ୍ୱରରେ ଘୋଷଣା କଲେ :

ମୋର ଆଜ ଏକ ଆନନ୍ଦର ଦିନ । କେତେବର୍ଷ ତଳେ ଏହି ସଭାଗୃହରେ ପଣ୍ଡୁ ହସ୍ତିନା ରାଜସିଂହାସନରେ ଆରୋହଣ କରିବାର ସିଦ୍ଧାନ୍ତ ଗ୍ରହଣ ସମୟରେ ମୁଁ ତାଙ୍କୁ ଆଶୀର୍ବାଦ କରିଥିଲି । ଆଜି ସେହି ମହାତ୍ମାଙ୍କର ଯୋଗ୍ୟପୁତ୍ର ଯୁଧିଷ୍ଠିରଙ୍କୁ ରାଜସିଂହାସନ ଆରୋହଣ କରିବାର ଅବ୍ୟବହିତ ପୂର୍ବରୁ ମୁଁ ତାଙ୍କୁ ଆଶୀର୍ବାଦ କରୁଛି ।

ସେ ଦୀର୍ଘ ଜୀବନ ଲାଭକରି ଧର୍ମାନୁମୋଦିତ ପନ୍ଥାରେ ରାଜ୍ୟଶାସନ କରନ୍ତୁ । ତାଙ୍କର ପିତୃପୁରୁଷଙ୍କ ପରି ରାଜସୂୟ, ଅଶ୍ୱମେଧ ଯଜ୍ଞ ପ୍ରଭୃତି ସମ୍ପାଦନ କରି ଯଶସ୍ୱୀ ହୁଅନ୍ତୁ ।

ତାଙ୍କର ସୁନାମ ଚତୁର୍ଦ୍ଦିଗରେ ପ୍ରସାରିତ ହେଉ ।

ସେ କୌରବମାନଙ୍କର ଗୌରବ ପରିବର୍ଦ୍ଧନ କରନ୍ତୁ— ତାଙ୍କର ରାଜତ୍ୱରେ ପ୍ରଜାପୁଞ୍ଜ ଆନନ୍ଦରେ ଶାନ୍ତି ଲାଭକରନ୍ତୁ ।

ଭୀଷ୍ମଙ୍କର ଏହି ଘୋଷଣାରେ ସଭାରେ ଉପସ୍ଥିତ ସମସ୍ତେ ଆନନ୍ଦିତ ହେଲେ । ସାଧୁ, ସାଧୁ ଶବ୍ଦରେ ସଭାଗୃହ କମ୍ପିତ ହେଲା ।

ନୀରବତା ଆସିବାରେ ସେ ପୁନଶ୍ଚ ଘୋଷଣା କଲେ—ରାଜା ଧୃତରାଷ୍ଟ୍ରଙ୍କ ଜ୍ୟେଷ୍ଠପୁତ୍ର ଦୁର୍ଯ୍ୟୋଧନ ଯୁବରାଜ ପଦରେ ଅଭିଷିକ୍ତ ହେବେ ଏବଂ ରାଜାଙ୍କର ସହାୟତାରେ ରାଜ୍ୟର ଉପର ଶ୍ରୀବୃଦ୍ଧି ଘଟେ, ଏହାର ଉପରେ ସର୍ବାଙ୍ଗୀନ ଉନ୍ନତି ସାଧିତ ହୁଏ ଏ ଦିଗରେ ଚେଷ୍ଟା କରିବେ ।

ସଭା ମଧ୍ୟରୁ ପୁନର୍ବାର ସ୍ୱର ଉତ୍ଥିତ ହେଲା—'ସାଧୁ' 'ସାଧୁ' ।

ତତ୍ପରେ କେଉଁଦିନ ସିଂହାସନ ଉତ୍ସବ ଅନୁଷ୍ଠିତ ତାହାର ଦିନ ଓ ସମୟ ଧାର୍ଯ୍ୟ ହେଲା ପରେ ସଭା ମଉଳିଲା ।

ତତ୍ପରେ ଯଥା ସମୟରେ ସିଂହାସନ ଆରୋହଣ ଉତ୍ସବ ଅନୁଷ୍ଠିତ ହେଲା । ଯୁଧିଷ୍ଠିର ଯଥାବିଧି ରାଜମୁକୁଟ ଧାରଣ କଲେ । ଦୁର୍ଯ୍ୟୋଧନ ମଧ୍ୟ ଯୁବରାଜ ପଦରେ ଅଭିଷିକ୍ତ ହେଲେ ।

ଏହାପରେ ଯୁଧିଷ୍ଠିର ଉପସ୍ଥିତ ମୁନି, ଋଷି, ବ୍ରାହ୍ମଣ, ବିଭିନ୍ନ ଦେଶର ରାଜା ଓ ଗୁରୁଜନମାନଙ୍କ ପ୍ରତି ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କଲେ । ପରେ ରାଜାଙ୍କର ଗୁରୁଦାୟିତ୍ୱ ବହନ କଲେ । ଏହି ଅବସରରେ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଶାନ୍ତିସ୍ଥାପନା ଉଦ୍ଦେଶ୍ୟରେ ଧୃତରାଷ୍ଟ୍ର ତାଙ୍କର ସାମ୍ରାଜ୍ୟକୁ ଦୁଇ ଭାଗରେ ବିଭକ୍ତ କରି ଯୁଧିଷ୍ଠିରଙ୍କୁ କୁରୁସାମ୍ରାଜ୍ୟର ପୁରାତନ ରାଜଧାନୀ ଖାଣ୍ଡବପ୍ରସ୍ଥର ଶାସନ ଦାୟିତ୍ୱ ଦେଲେ ଏବଂ ହସ୍ତିନାପୁର ଦୁର୍ଯ୍ୟୋଧନଙ୍କ ଶାସନାଧୀନରେ ରହିବାର ଅଭିଳାଷ ବ୍ୟକ୍ତ କଲେ ।

ରାଜାଙ୍କର ଏହି ନିଷ୍ପତ୍ତି ଯୁଧିଷ୍ଠିର ହସି ହସି ମାନିନେଲେ । ଫଳରେ କୁରୁ-ସାମ୍ରାଜ୍ୟ ବସ୍ତୁତଃ ଦୁଇଭାଗରେ ବିଭକ୍ତ ହେଲା—ହସ୍ତିନାପୁର ଓ ଖାଣ୍ଡବପ୍ରସ୍ଥ ।

ଶ୍ରୀକୃଷ୍ଣଙ୍କ ପରାମର୍ଶରେ କୌରବମାନଙ୍କର ଧନସମ୍ପଦ ମଧ୍ୟ ଦୁଇଭାଗରେ ବିଭକ୍ତ ହେଲା । ଅର୍ଦ୍ଧେକ ସମ୍ପତ୍ତି ନେଇ ପାଣ୍ଡବ ମାନେ ଖାଣ୍ଡବପ୍ରସ୍ଥ ଅଭିମୁଖରେ ଯାତ୍ରା କଲେ । ହସ୍ତିନାପୁରର ଅଧିବାସୀମାନଙ୍କ ମଧ୍ୟରୁ ଅନେକେ ସେମାନଙ୍କର ସହଯାତ୍ରୀ ହୋଇଥିଲେ । ପରବର୍ତ୍ତୀ କାଳରେ ଏହି ଖାଣ୍ଡବପ୍ରସ୍ଥର ନାମ ଇନ୍ଦ୍ରପ୍ରସ୍ଥ ଦିଆଯାଇଥିଲା ।

## ● ଶେଷ ଆଦେଶ

ରାଜ୍ୟ ବିଭାଜନ ପରେ ଭୀଷ୍ମ ଭାବିଥିଲେ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଶାନ୍ତି ପ୍ରତିଷ୍ଠିତ ହେବ । ସେମାନେ ନିଜ ନିଜ ରାଜ୍ୟ ଶାସନ ସୁଖରେ କାଳାତିପାତ କରିବେ ।

ତାହା ହେଲା ନାହିଁ ।

ମହାମୁନି ବେଦବ୍ୟାସ, ଶ୍ରୀକୃଷ୍ଣ ଓ ପାଞ୍ଚାଳ-ରାଜ ଦ୍ରୁପଦଙ୍କ ସହଯୋଗରେ ଖାଣ୍ଡବପ୍ରସ୍ଥ ଏକ ସମୃଦ୍ଧିଶାଳୀ ନଗରରେ ପରିଣତ ହେଲା । ଶିଳ୍ପର ଉତ୍କର୍ଷ ଓ ଧର୍ମର କେନ୍ଦ୍ରବିନ୍ଦୁ ରୂପେ ଅଳ୍ପଦିନ ମଧ୍ୟରେ ଏହା ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । କେବଳ ଯେ ହସ୍ତିନାପୁରର ଅନେକ ଅଧିବାସୀ ଏଠାରେ ଆସି ବସବାସ କଲେ ତା ନୁହେଁ, ଅନ୍ୟାନ୍ୟ ରାଜ୍ୟରୁ ବହୁ କ୍ଷମତାଶାଳୀ ବ୍ୟକ୍ତି ଏହି ନଗରରେ ବସବାସ କରିବା ଶ୍ରେୟସ୍କର ମନେକଲେ । ନଗରୀ ଗଠନ ସମ୍ପୂର୍ଣ୍ଣ ହେଲା ପରେ ଯୁଧିଷ୍ଠିର ହେଲେ ଏହାର ରାଜା ।

ରାଜ୍ୟାଭିଷେକ ପରେ ବେଦବ୍ୟାସ ଧର୍ମକ୍ଷେତ୍ରକୁ ଓ ଶ୍ରୀକୃଷ୍ଣ ଦ୍ୱାରକାକୁ ପ୍ରତ୍ୟାବର୍ତ୍ତନ କଲେ ।

ଦୀର୍ଘ ଛତିଶବର୍ଷ ପାଣ୍ଡବମାନେ ଇନ୍ଦ୍ରପ୍ରସ୍ଥରେ ରାଜତ୍ୱ କରିଥିଲେ । ମାତ୍ର କ୍ଷଣକ ପାଇଁ ସେମାନେ ଧର୍ମପଥରୁ ବିଚ୍ୟୁତ ହୋଇ ନ ଥିଲେ ।

ଇନ୍ଦ୍ରପ୍ରସ୍ଥ ଯେତେବେଳେ ଗୌରବର ଶେଷସୀମାରେ, ପିତୃପୁରୁଷଙ୍କ ସନ୍ତୋଷ ପାଇଁ ମହାମୁନି ବେଦବ୍ୟାସ ଓ ଶ୍ରୀକୃଷ୍ଣଙ୍କ ପରାମର୍ଶ ଅନୁସାରେ ଯୁଧିଷ୍ଠିର ରାଜସୂୟ ଯଜ୍ଞାନୁଷ୍ଠାନ କରିଥିଲେ । ମହାସମାରୋହରେ ଯଜ୍ଞ ଶେଷ ହେଲା । ଯୁଧିଷ୍ଠିର ଚକ୍ରବର୍ତ୍ତୀ ଉପାଧିରେ ଭୂଷିତ ହେଲେ । ନିମନ୍ତ୍ରିତ ରାଜାମାନେ ସସମ୍ମାନେ ବିଦାୟ ନେଲେ ।

ଭୀଷ୍ମ, ଦ୍ରୋଣ, ଦୁର୍ଯ୍ୟୋଧନ ପ୍ରଭୃତି ଏହି ଯଜ୍ଞକୁ ନିମନ୍ତ୍ରିତ ହୋଇଥିଲେ । ଯଜ୍ଞ ଶେଷରେ ସେମାନେ ମଧ୍ୟ ହସ୍ତିନାପୁର ଅଭିମୁଖରେ ପ୍ରତ୍ୟାବର୍ତ୍ତନ କଲେ ।

ଇନ୍ଦ୍ରପ୍ରସ୍ଥରୁ ଫେରିବା ପରେ ଦୁର୍ଯ୍ୟୋଧନଙ୍କୁ ହସ୍ତିନାପୁର ଶ୍ମଶାନ ଲାଗିଲା । ଈର୍ଷାରେ, ହିଂସାରେ ସେ ଜଳିଲେ । ଖାଦ୍ୟପେୟରେ ଠିକ୍ ନାହିଁ । ବିଚଳିତ ଅବସ୍ଥା । ସେ କେବେ ମନେ ମନେ ଭାବି ନ ଥିଲେ ଜଙ୍ଗଲାକୀର୍ଣ୍ଣ ଖାଣ୍ଡବପ୍ରସ୍ଥ ପାଣ୍ଡବମାନଙ୍କ କାଉଁରୀକାଠି ସ୍ପର୍ଶରେ ସ୍ୱର୍ଗର ଇନ୍ଦ୍ରଭବନରେ ପରିଣତ ହେବ । ଅସମ୍ଭବ ସମ୍ଭବ ହୋଇଛି । ଯେଉଁମାନଙ୍କୁ [illegible] ହେବାପାଇଁ ସେ ଏତେ ଚେଷ୍ଟା କରିଥିଲେ ସେମାନଙ୍କର [illegible]ରେ

ଶ୍ୱାସ ଊର୍ଦ୍ଧ୍ୱାବର୍ତ୍ତୀ ଅବଲୋକନ୍ତ । ସେ ଆଉ ସହ୍ୟ କରିପାରିଲେ ନାହିଁ । କପଟ ପାଣ୍ଡବ-ମାନଙ୍କୁ ଦାଶର ଉଚ୍ଚାଶା କରିବେ ଏହି ଚିନ୍ତାରେ ସେ ଦଗ୍‌ଧୀଭୂତ ହେବାକୁ ଲାଗିଲେ ।

ମାତୁଳ ଶକୁନି ତାଙ୍କର ପରାମର୍ଶଦାତା । ସେ କଥାର ମନେ ମନେ ତାଙ୍କ ଆଗରେ ପ୍ରକାଶ କଲେ । ଶକୁନି ତାଙ୍କୁ ଧୈର୍ଯ୍ୟ ଧରିବା ପାଇଁ କହିଲେ—ଏହି ଗୁରୁ କଥାକୁ ଏତେ ଚିନ୍ତା । ମୋ ପରାମର୍ଶ ଅନୁସାରେ କାର୍ଯ୍ୟ କଲେ ମୁଁ ପାଣ୍ଡବମାନଙ୍କୁ ତୁମ ପାଦତଳର ଭୃତ୍ୟ କରିଦେବି । ଦ୍ରୌପଦୀ ମଧ୍ୟ ଏଥିରୁ ବାଦ ଯିବେ ନାହିଁ ।

ଶୁଣ ! ଯୁଧିଷ୍ଠିରଙ୍କର ପଶାଖେଳ ପ୍ରତି ଖୁବ ଆଗ୍ରହ । ମାତ୍ର ଖେଳର ଗୁଣ ଅଗୁଣ ଜାଣନ୍ତି ନାହିଁ । ପଶାଖେଳର ଆୟୋଜନ କର । ତାଙ୍କୁ ନିମନ୍ତ୍ରଣ କର । ବାଜି ରଖି ଖେଳ । ମୁଁ ତୁମ୍ଭ ପାଇଁ ଖେଳି ସେମାନଙ୍କର ଧନସମ୍ପଦ ସେ କେବଳ ଅପହରଣ କରି ଆଣିବି ତା ନୁହେଁ, ସେମାନଙ୍କୁ ତୁମର ଆଜ୍ଞାବହ ଭୃତ୍ୟରେ ପରିଣତ କରିଦେବି ।

ଆଉ ମନେରଖ, ଏଥିପାଇଁ ତୁମ ପିତା ଓ ସେହି ବୃଦ୍ଧ ଭୀଷ୍ମଙ୍କର ଅନୁମତି ଦରକାର । ଆଣିପାରିବ ତ ?

ଦୁର୍ଯ୍ୟୋଧନ ଯେପରି ଅକୂଳ ସାଗରରେ କୂଳ ପାଇଲେ । ସେ ପିତାଙ୍କ ନିକଟକୁ ଯାଇ ତାଙ୍କର ମନୋଭାବ ପ୍ରକାଶ କଲେ । ପ୍ରଥମେ ପ୍ରଥମେ ସେ ଏଥିରେ ରାଜି ହେଉ ନ ଥିଲେ । ଦୁର୍ଯ୍ୟୋଧନ ପିତାଙ୍କର ଦୁର୍ବଳତା ଜାଣନ୍ତି । ପିତା ଅମଙ୍ଗ ହେବା ଦେଖି ଦୁର୍ଯ୍ୟୋଧନ ତାଙ୍କର ଶେଷ ଅସ୍ତ୍ରପ୍ରୟୋଗ କଲେ—ଆତ୍ମହତ୍ୟାର ଧମକ ଦେଲେ ।

ଏଥର ଧୃତରାଷ୍ଟ୍ର ପୁତ୍ରର ଦୁଃଖରେ ରାଜି ହୋଇ ଭୀଷ୍ମଙ୍କର ଅନୁମତି ପାଇଁ ତାଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ ଏହି ଖେଳରେ ବାଧା ନ ଦେବା ପାଇଁ ଏବଂ ଏଥିରେ କୌଣସି ପ୍ରତିବନ୍ଧକ ସୃଷ୍ଟି ନ କରିବା ପାଇଁ ତାଙ୍କୁ ବ୍ୟାକୁଳ ନିବେଦନ ଜଣାଇଲେ ।

ଧୃତରାଷ୍ଟ୍ରଙ୍କର ଅନୁରୋଧ ଯେପରି ତାଙ୍କର ହୃଦୟରେ ଅଗ୍ନିର ଲହରୀ ଖେଳାଇ ଦେଲା । ତାଙ୍କର ମନେ ହେଲା ଦୁନିଆରେ ଆଉ କ୍ଷଣେ ମାତ୍ର ରହିବା ଉଚିତ ନୁହେଁ । ମାତ୍ର ପ୍ରତିଜ୍ଞା ରାଜସିଂହାସନର ସୁରକ୍ଷା ସମର୍ଥକ ରୂପେ ଅଙ୍ଗୀକାର ହେବା ପାଇଁ ସେ ସ୍ୱର୍ଗତଃ ପିତା ଶାନ୍ତନୁଙ୍କ ନିକଟରେ ପ୍ରତିଜ୍ଞାବଦ୍ଧ । ଦୁର୍ଯ୍ୟୋଧନ ବର୍ତ୍ତମାନ ଏହାର ରାଜା । ତାଙ୍କୁ ପରିତ୍ୟାଗ କରିବେ କିପରି ? ସତ୍ୟଭ୍ରଷ୍ଟ ହେବେ କିପରି ?

ପ୍ରକୃତସ୍ଥ ହୋଇ ଗମ୍ଭୀର ସ୍ୱରରେ କହିଲେ—ଧୃତରାଷ୍ଟ୍ର ! କପଟପଶା ଖେଳ ଯୋଜନା ମୁଁ ଜାଣେ । ଅଧିକ ମଧ୍ୟ ଦେଖୁଛି ଯେ ଯଦି ମୁଁ ଏଥିରେ ହସ୍ତକ୍ଷେପ କରେ ତେବେ ଦୁର୍ଯ୍ୟୋଧନ ଓ ତାହାର ସାହାଯ୍ୟକାରୀ ଗୋଷ୍ଠୀ ମୋର ଆଦେଶ ଲଙ୍ଘନ କରିବେ; ଏମନକି ମୋତେ ହତ୍ୟା କରିବା ପାଇଁ ସେମାନେ ପଶ୍ଚାତ୍‌ପଦ ହେବେ ନାହିଁ ।

କୌରବମାନଙ୍କର କି ଅଧଃପତନ ! ଦୀର୍ଘଶ୍ୱାସ ତ୍ୟାଗକଲେ ପିତାମହ । କହୁଥାନ୍ତି ନୀରବ ରହି ପୁଣି ଆରମ୍ଭ କଲେ—କୌରବମାନେ ଏତେ ତଳକୁ ଖସିଆସିଲେଣି ଯେ ସେମାନେ ଦରବାରୀମାନଙ୍କୁ ଆଦେଶ ଦେବେ ଓ ସେ ଆଦେଶ ପାଳିତ ନହେଲେ ଦ୍ରୋହ ଆଚରଣ କରିବେ । ମନେରଖ ଧୃତରାଷ୍ଟ୍ର, ତୁମର ଅବିବେଚିତ ପୁତ୍ରସ୍ନେହ ହିଁ କୌରବ-ମାନଙ୍କର ଧ୍ୱଂସର କାରଣ ହେବ ଏବଂ ତା ସଙ୍ଗେ ସଙ୍ଗେ ଧ୍ୱଂସ ହୋଇଯିବ ଧର୍ମ, ଯେଉଁଥିପାଇଁ ମୁଁ ସାରାଜୀବନ ସାଧନା କରି ଆସିଛି ।

ଏହି ସଙ୍କଟରେ ପିତାମହ କିପରି ମର୍ମନ୍ତୁଦ ଯନ୍ତ୍ରଣା ଅନୁଭବ କରୁଥିଲେ ସ୍ପଷ୍ଟ ଜଣାଯାଏ । ଧୃତରାଷ୍ଟ୍ର ଏକ ଅଡୁଆ ପରିସ୍ଥିତିରେ ପଡ଼ିଲେ । ଏ ବିଷୟରେ ଭୀଷ୍ମଙ୍କର ଦ୍ୟୂତକ୍ରୀଡ଼ା ନ ହେଲେ ଦୁର୍ଯ୍ୟୋଧନ ଆତ୍ମହତ୍ୟା କରିବ—ଦ୍ୟୂତକ୍ରୀଡ଼ା ପାଇଁ ଜିଦ୍ ଧରିଲେ ପିତାମହଙ୍କର କୋପଦୃଷ୍ଟିରେ ପଡ଼ିବାକୁ ହେବ । ଏଣେ ବ୍ରହ୍ମହତ୍ୟା, ତେଣେ ଗୋହତ୍ୟା । କିଛି ସମୟ ନିର୍ବାକ୍ ହୋଇଗଲେ ସେ । ପୁଣି ଶକ୍ତି ସଞ୍ଚୟ କଲେ । ମୋ କଥା କଣ ପିଲାମାନେ ଶୁଣିବେ—ନା ତାର ବନ୍ଧୁମାନେ ଏହା ଶୁଣିବା ପାଇଁ ତାଙ୍କୁ ସୁଯୋଗ ଦେବେ ?

ପରିସ୍ଥିତି ଅସହ୍ୟ ହେଲା । ଧୃତରାଷ୍ଟ୍ରଙ୍କୁ ଆଶୀର୍ବାଦ କରି ନିଶ୍ଚିନ୍ତ ହେବାପାଇଁ ଉପଦେଶ ଦେଲେ ।

କେବଳ ଏତିକି ଯେ ଏଥିରେ ଆପଣ ହସ୍ତକ୍ଷେପ କରିବେ ନାହିଁ । ଧୃତରାଷ୍ଟ୍ରଙ୍କ କଣ୍ଠ ମୁହୁର୍ମୁହୁ ଥରି ଉଠୁଥିଲା ।

ଭୀଷ୍ମଙ୍କ ଆଖିରେ ଅଗ୍ନିର ତେଜ । ଯୋଉଟା ଏ ଅନୁରୋଧ କରୁଛ ନା ଧମକାଇ କାର୍ଯ୍ୟ ହାସଲ କରିବା ପାଇଁ ଚେଷ୍ଟା କରୁଛ । ତୁମକୁ ଲଜ୍ଜା ଲାଗୁନି ।

ମୁଁ ଧମକାଉ ନାହିଁ । ଏହାର ପରିଣତି ଭାବିଲା ବେଳକୁ ଦେହ ଥରି ଉଠୁଛି । ମୁଁ ସବୁ ସହିପାରିବି, ମାତ୍ର ପାରିବି ନାହିଁ ମୋର ପୁତ୍ରର ଆତ୍ମହତ୍ୟା ।

ଧମକାଉ ନାହିଁ ତ ଡରୁଛ । ଭୀଷ୍ମଙ୍କ କଣ୍ଠସ୍ୱରରେ ଦୃଢ଼ତା । ଆଉ ଜାଣିରଖ, ବର୍ତ୍ତମାନ ବୃଦ୍ଧ ହେଲେ ମଧ୍ୟ ଆତ୍ମରକ୍ଷା କରିବାର ଯଥେଷ୍ଟ ଶକ୍ତି ମୋର ଅଛି । ହଉ ଯାଅ ।

ଧୃତରାଷ୍ଟ୍ର ନୀରବରେ ନିଷ୍କ୍ରାନ୍ତ ହେଲେ ।

ପରେ ପରେ ପ୍ରବେଶ କଲେ ବିଦୁର ଓ ଯୁଧିଷ୍ଠିର । ସାଷ୍ଟାଙ୍ଗ ପ୍ରଣିପାତ ହେବାପରେ ଅତି ବିନୀତ ସ୍ୱରରେ ଆରମ୍ଭ କଲେ ଯୁଧିଷ୍ଠିର—ପିତାମହ ! ଗୋଟିଏ ଅନୁଗ୍ରହ ଭିକ୍ଷା କରିବାକୁ ଆସିଛୁ । ଆସନ୍ତାକାଲି ଯେଉଁ ପଶାଖେଳ ହେବାକୁ ଯାଉଛି ସେହି ବିଷୟରେ ।

କାହିଁକି ଏହି ଅନ୍ୟାୟ ପ୍ରତିଦ୍ୱନ୍ଦ୍ୱିତାର ଆହ୍ୱାନ ରକ୍ଷା କଲ । ଦେଖୁଛି ତୁମର ବୁଦ୍ଧି ଶୁଦ୍ଧି ଲୋପ ପାଇଗଲାଣି । ଭୀଷ୍ମ ବିଚଳିତ ହୋଇ ଚାହିଁ ରହିଲେ ।

ମୁଁ ଅବବୋଧ ହୋଇପାରେ । ମାତ୍ର ମୁଁ ଏହା ଗ୍ରହଣ କରୁଛି ଶାନ୍ତି ପାଇଁ । ଯଦି ଏହି ଆହ୍ୱାନ ଗ୍ରହଣ କର ନ ଥାନ୍ତି ଦୁର୍ଯ୍ୟୋଧନ ଯୁଦ୍ଧ ଘୋଷଣା କରିଥାନ୍ତେ । ଯୁଦ୍ଧ ଅର୍ଥ ରକ୍ତପାତ, ଅଗଣିତ ଜନସାଧାରଣଙ୍କର ମୃତ୍ୟୁ, ନାରୀଧର୍ଷଣ, ଗୃହଦାହ, ଗୋ ହତ୍ୟା । ମୋ ଆଖି ଆଗରେ ଏହା ଘଟିବ । ସହିପାରିବି ନାହିଁ ପିତାମହ ! ରକ୍ଷ ହେ ଭଗବାନ । ମୁଁ ବୁଝୁଛି ମୁଁ ଏହି ପ୍ରତିଦ୍ୱନ୍ଦ୍ୱିତାରେ ହାରିବି । ତଥାପି ମୁଁ ଏହା ଗ୍ରହଣ କରୁଛି ଶାନ୍ତି ପାଇଁ, ଯୁଦ୍ଧ ବିରତି ପାଇଁ । ଯୁଧିଷ୍ଠିରଙ୍କ ମୁଖମଣ୍ଡଳରେ ପ୍ରଶାନ୍ତିର ଭାବ ।

ତୁମ ସ୍ୱଭାବ ମୁଁ ଭଲଭାବରେ ଜାଣେ । ହେଲେ ମୋର ଆଶଙ୍କା ତୁମର ସର୍ବସ୍ୱ ଲୁଟି ନ ନେଲା ପର୍ଯ୍ୟନ୍ତ ଦୁର୍ଯ୍ୟୋଧନ ସନ୍ତୁଷ୍ଟ ହେବ ନାହିଁ । ଚେତାଇ ଦେଲେ ପିତାମହ ।

ମୁଁ ସେଥିପାଇଁ ପ୍ରସ୍ତୁତ । ମୁଁ ସହଜରେ ଇନ୍ଦ୍ରପ୍ରସ୍ଥ ତାଙ୍କୁ ଦେଇଦେବି । ତଥାପି ଯୁଦ୍ଧ ଲଗାଇଦେବି ନାହିଁ । ବିନୀତ ଭାବରେ ଯୁଧିଷ୍ଠିର ନିଜର ମନୋଭାବ ଜଣାଇଲେ ।

ପିତାମହଙ୍କ ଗମ୍ଭୀର ମୁଖମଣ୍ଡଳରେ ହାସ୍ୟର ଛଟା ଖେଳିଗଲା । ତାଙ୍କର ସମ୍ମୁଖରେ ଯେ କୁରୁକୁଳର ଜଣେ ଧର୍ମପାଇଁ, ଶାନ୍ତିପାଇଁ ନିଜର ସର୍ବସ୍ୱ, ଏପରିକି ଜୀବନ ଦେବା ପାଇଁ ପ୍ରସ୍ତୁତ । ତାପରେ ଅତି କୋମଳ ସ୍ୱରରେ କହିଲେ—ଯାଅ ବତ୍ସ ! ମୁଁ ଆନନ୍ଦିତ ଯେ ସବୁ ଷଡ଼ଯନ୍ତ୍ରରେ ଦୁର୍ଯ୍ୟୋଧନଙ୍କ ସହିତ ତୁମର ମତାନୈକ୍ୟ ଘଟୁଥିଲେ ମଧ୍ୟ ଗୋଟିଏ ବିଷୟରେ ତୁମେ ଦୁହେଁ ଏକମତ, ତାହା ହେଉଛି—ଏହି ରାଜକୀୟ କ୍ରୀଡ଼ାରେ ମୁଁ ହସ୍ତକ୍ଷେପ କରିବି ନାହିଁ । ଯେତେବେଳେ ତୁମେ ମୋତେ ଏ ଅନୁରୋଧ ଜଣାଉଛ ମୁଁ ଏହା ଏଡ଼ାଇ ଦେଇପାରିବି ନାହିଁ । ରାଜାଙ୍କୁ ମୋର ଆଦେଶ କିଛି ନାହିଁ । ସତର୍କ ଦେଉଛି । ଖେଳ ସରିବା ପର୍ଯ୍ୟନ୍ତ ମୁଁ ଏଥିରେ ହସ୍ତକ୍ଷେପ କରିବି ନାହିଁ । ଯାଅ ବତ୍ସ ! ମୋର ତୁମକୁ ଆଶୀର୍ବାଦ । ଏହି ଅଗ୍ନି ପରୀକ୍ଷାରେ ତୁମେ ଉତ୍ତୀର୍ଣ୍ଣ ହୁଅ ।

ବିରାଟ ସଭା ଗୃହ । ଖେଳ ଆରମ୍ଭ ହେଲା । ଏହା ଦେଖିବା ପାଇଁ ଭୀଷ୍ମ, ଦ୍ରୋଣ, କୃପ ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନେ ଉପସ୍ଥିତ ଥାନ୍ତି ।

ଖେଳ କାହା କାହା ମଧ୍ୟରେ ?

ଏକ ପକ୍ଷରେ ଧର୍ମ, ଅନ୍ୟପକ୍ଷରେ ଅଧର୍ମ । ଏକପକ୍ଷରେ ପଶାଖେଳ ଜରିଆରେ ପାଣ୍ଡବମାନଙ୍କୁ ସର୍ବସ୍ୱାନ୍ତ କରିବା କୁଟିଳ ଚକ୍ରାନ୍ତ, ଅନ୍ୟପକ୍ଷରେ ସର୍ବସ୍ୱ ଦେଇ ଶାନ୍ତି ପାଇଁ ଚରମ ତ୍ୟାଗ ।

ଫଳ ଯାହା ହେବାର ହେଲା । ଦୁର୍ଯ୍ୟୋଧନଙ୍କ ପକ୍ଷରୁ ଶକୁନି ଯୁଧିଷ୍ଠିରଙ୍କ ସହିତ ବାଜି ରଖି ପଶା ଖେଳିଲେ । ପ୍ରତ୍ୟେକ ଥର ଯୁଧିଷ୍ଠିର ହାରିଲେ, ଶକୁନି ଜିତିଲେ । ଏହି ଖେଳରେ ଯୁଧିଷ୍ଠିର ନିଜର ସମସ୍ତ ଧନ ସମ୍ପତ୍ତି, ସୁନା ହୀରା, ମୂଲ୍ୟବାନ୍ ଅଳଙ୍କାର, ଏପରିକି ନିଜର ଭାଇମାନଙ୍କୁ ହାରିଲେ । ବାକି ଥିଲେ ଦ୍ରୌପଦୀ । ତାଙ୍କୁ ମଧ୍ୟ ଶେଷରେ ପଣ ରଖି ଖେଳି ଯୁଧିଷ୍ଠିର ହାରିଲେ ।

କୌରବମାନଙ୍କ ମଧ୍ୟରେ ଥିବା ଗଣ୍ୟମାନ୍ୟ ବ୍ୟକ୍ତି ସେଠାରେ ଉପସ୍ଥିତ ଥିଲେ । କାହାରି ମୁହଁରୁ ପଦେ କଥା ବାହାରୁ ନ ଥାଏ । ଶେଷରେ ଦୁର୍ଯ୍ୟୋଧନଙ୍କ ନିର୍ଦ୍ଦେଶରେ ଯେତେବେଳେ ଦ୍ରୌପଦୀଙ୍କୁ ସଭାମଧ୍ୟକୁ ଅଣାଗଲା ଏବଂ ତାଙ୍କୁ ବିବସନ କରିବାର ଚେଷ୍ଟା କରାଗଲା, ସେତେବେଳେ ସଭା ସମସ୍ତେ ନୀରବ ରହିଲେ ।

ଏତିକିବେଳେ ଶ୍ରୀକୃଷ୍ଣ ଦ୍ରୌପଦୀଙ୍କୁ ଏହି ମହାବିପଦରୁ ଉଦ୍ଧାର କଲେ । ଦୁଃଶାସନ ଯେତେ ଚେଷ୍ଟା କଲେ ଦ୍ରୌପଦୀଙ୍କୁ ବିବସ୍ତ୍ର କରିପାରିଲେ ନାହିଁ ।

ଦ୍ରୌପଦୀ ନାରୀ । ଏହି ଅପମାନରେ ତାଙ୍କର ଚରମ କ୍ରୋଧ ଜାତ ହେଲା । ଆଖିରେ ଅଗ୍ନି ଝରେ । ଦୃଷ୍ଟିପଡ଼ିଲା ତାଙ୍କର ଧୃତରାଷ୍ଟ୍ରପ୍ରାସାଦ ଉପରେ । ଘୁହୁଁ ଘୁହୁଁ ସବୁ ଜଳି ଉଠିଲା । ଅଗ୍ନିଶିଖା ଅନ୍ତଃପୁରରେ ପ୍ରବେଶ କଲା । ପୁରନାରୀମାନେ ଅସ୍ଥିର ହୋଇ ପଡ଼ି ବାହାରି ଆସିଲେ । ସିଂହାସନରେ ନିଆଁ—ଜୀବନରକ୍ଷା କରିବା ପାଇଁ ସେ ସବୁ ପକାଇଦେଲେ । ବର୍ତ୍ତମାନ ସମସ୍ତେ ଉଦ୍‌ଭ୍ରାନ୍ତ ।

ଏ ଅବସ୍ଥା ଦେଖି ସମସ୍ତେ ପ୍ରମାଦ ଗଣିଲେ । କୋପ ଶାନ୍ତ କରିବା ପାଇଁ ଦ୍ରୌପଦୀଙ୍କୁ ପ୍ରାର୍ଥନା କଲେ । କଟ୍ଟୋପଦାଙ୍କର କ୍ରୋଧ ଶାନ୍ତ ହେଲା । ଏହି ସମୟରେ ଭୀଷ୍ମ ଦଣ୍ଡାୟମାନ ହେଲେ । ସଭାଗୃହ ନିସ୍ତବ୍ଧ ।

ଗମ୍ଭୀର ସ୍ୱରରେ ସେ ଆରମ୍ଭ କଲେ—

ଶୁଣ ମୋର ଚରମ ଆଦେଶ । ବର୍ତ୍ତମାନ ଖେଳ ହେଉଛି । ଏଥି ମଧ୍ୟରେ ଯାହା ଯାହା ଘଟିଯାଇଛି, ତାହା ଖେଳ ବୋଲି ଧରିବାକୁ ହେବ । ବର୍ତ୍ତମାନ ପାଣ୍ଡବମାନେ ମୁକ୍ତ । ଦ୍ରୌପଦୀ ମୁକ୍ତ । ସେମାନେ ଯେଉଁ ସବୁ ସମ୍ପତ୍ତି ହରାଇଛନ୍ତି, ସେସବୁ ପୁନଶ୍ଚ ସେମାନେ ଫେରି ପାଇବେ । ଯଦି ଏହି ଆଦେଶ ପାଳନରେ କେହି ବାଧା ଦିଏ ତେବେ ତାଙ୍କୁ ଏହି ମୁହୂର୍ତ୍ତରେ ହତ୍ୟାକରାଯିବ ।

ଦୁର୍ଯ୍ୟୋଧନଙ୍କୁ ଲକ୍ଷ୍ୟକରି କହିଲେ—"କଣ କହୁଛ ଏହି ଆଦେଶ ଯେ ଅମାନ୍ୟ କରିବ ?

ଦୁର୍ଯ୍ୟୋଧନଙ୍କ ପାଟିରୁ କଥା ବାହାରିଲା ନାହିଁ ।

ଧୃତରାଷ୍ଟ୍ର ଭୀଷ୍ମଙ୍କ ମନୋଭାବ ବେଶ୍ ବୁଝିପାରିଲେ । ସେ ଏପର୍ଯ୍ୟନ୍ତ ଯାହା କହିଥିଲେ ବା କରିଥିଲେ ସବୁ ଭୁଲିଯାଇ ଭୀଷ୍ମଙ୍କୁ ସମର୍ଥନ କଲେ ।

ଖେଳ ସରିଲା ।

ଦୁର୍ଯ୍ୟୋଧନ ଓ ଶକୁନିଙ୍କର ପାଣ୍ଡବମାନଙ୍କୁ ସର୍ବସ୍ୱାନ୍ତ କରିବାର ସମସ୍ତ ଅପଚେଷ୍ଟା ବୃଥା ହେଲା ।

ପିତାମହଙ୍କର ଏତାଦୃଶ କାର୍ଯ୍ୟରେ ଦୁର୍ଯ୍ୟୋଧନ ହତାଶ ହେଲେ ମଧ୍ୟ ନିରାଶ ହେଲେ ନାହିଁ । ଶକୁନିଙ୍କର ପରାମର୍ଶ କ୍ରମେ ପୁଣିଥରେ ଯୁଧିଷ୍ଠିରଙ୍କୁ ପଶାଖେଳିବା ପାଇଁ ଆମନ୍ତ୍ରଣ କରାଗଲା

ସବାଶେଷ ସିଡାଙ୍କୁ ଅନୁରୋଧ କଲେ । ଦୁର୍ଯୋଧନଙ୍କର ଏପରି ଧ୍ୱଂସାତ୍ମକ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିବା ନିମନ୍ତେ ବିଦୁର, ଗାନ୍ଧାରୀ ଓ ଧୃତରାଷ୍ଟ୍ରଙ୍କୁ ଅନୁରୋଧ କଲେ । ବିନାଶକାଳ ଉପସ୍ଥିତ ହେଲେ ସଦୁପଦେଶ ଶୁଣିବାପାଇଁ ମନରେ ଇଚ୍ଛା ଥାଏ ନାହିଁ । ଧୃତରାଷ୍ଟ୍ରଙ୍କ ପକ୍ଷରେ ଏହାର ବ୍ୟତିକ୍ରମ ଘଟନ୍ତା କାହିଁକି ?

ଆଉଥରେ ପଶାଖେଳିବା ପାଇଁ ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ ଡକାଇଲେ । ଯୁଧିଷ୍ଠିର ବଡ଼ଦେଇଙ୍କର ଯେ କୌଣସି ଆଦେଶ ମାନିବା ପାଇଁ ପ୍ରତିଶ୍ରୁତିବଦ୍ଧ । ଏ ଆଦେଶ ଅଗ୍ରାହ୍ୟ କରନ୍ତେ କିପରି ? ତାଙ୍କ କଥା ମାନିଲେ ।

ପୁଣି ସେହି ସଭା ଗୃହରେ ଖେଳ ଆରମ୍ଭ ହେଲା । ଏଥର ପଣ ହେଲା ଯିଏ ହାରିବେ ସେ ବାରବର୍ଷ ପାଇଁ ବନବାସ ଯିବେ ଏବଂ ତତ୍ପରେ ଗୋଟିଏ ବର୍ଷ ଅଜ୍ଞାତ ବାସରେ ରହିବେ । ଏହି ଅଜ୍ଞାତ ବାସ ସମ୍ପୃକ୍ତ ସମୟରେ ପୁଣି ଯଦି ସେ ଚିହ୍ନା ପଡ଼ନ୍ତି ତେବେ ବନବାସ ପୁଣି ବାରବର୍ଷ ପର୍ଯ୍ୟନ୍ତ ।

ଏଥର ମଧ୍ୟ ଯୁଧିଷ୍ଠିର ହାରିଲେ । ଫଳରେ ଭ୍ରାତୃଗଣ ଓ ଦ୍ରୌପଦୀଙ୍କ ସହିତ ସେ ବନକୁ ବାହାରିଲେ ।

ପାଣ୍ଡବ ଓ ଦ୍ରୌପଦୀଙ୍କର ବନଗମନ ଦୃଶ୍ୟ ଅତି କରୁଣ । ହସ୍ତିନାପୁରବାସୀ ସେମାନଙ୍କୁ ଲୋତକପୂର୍ଣ୍ଣ ଚକ୍ଷୁରେ ବିଦାୟ ଦେଲେ ।

ଏହି ଦିନଠାରୁ କୌରବ ବଂଶର ଧ୍ୱଂସର ବୀଜ ବପନ ହୋଇଗଲା । ତାହାର ସୂଚନା ଦେଲା ବିନା ମେଘରେ ବଜ୍ରାଘାତ, ଭୂକମ୍ପ, ଆଦିର ଅନେକ ଅଶୁଭ ସଙ୍କେତ ।

## ● ବନବାସ ପରେ

ରାତି ଶେଷ ହୋଇଛି । ସୂର୍ଯ୍ୟୋଦୟ ହୋଇ ନାହିଁ । ସାମ୍ନା ଘାସ ଉପରେ ଅନ୍ୟମନସ୍କ ଭାବରେ ପଦଚାରଣା କରୁଛନ୍ତି । ଗଙ୍ଗାବକ୍ଷରୁ ଶୀତଳ ବାୟୁ ବହି ଆସୁଛି । ଚତୁର୍ଦ୍ଦିଗରେ ଶୀତଳତାର ସ୍ପର୍ଶ । ମାତ୍ର ଏହା ସେପରି ଅଜନ୍ମ ଦୃଷ୍ଟିହୀନ ରାଜାଙ୍କୁ ସ୍ପର୍ଶ କରିପାରୁ ନାହିଁ । ତାଙ୍କ ମୁଖମଣ୍ଡଳରେ ସ୍ୱେଦବିନ୍ଦୁ । ଅନ୍ତରରେ ବହ୍ନି ଜଳୁଛି । ତାର ପ୍ରଭାବ ମୁଖମଣ୍ଡଳରେ ପ୍ରତିଫଳିତ । ବାହ୍ୟ ଶୀତଳତା, ଏହା କ'ଣ ତାଙ୍କୁ ସ୍ପର୍ଶ କରିପାରେ ?

ଘଟଣା ଗୁରୁତର । ଦିନକ ପୂର୍ବରୁ ସେ କପଟ ପଶାଖେଳର ଶେଷରେ ଚରମ ଆଦେଶ ଶୁଣାଇ ଦେଇଥିଲେ । ତଦ୍ଦ୍ୱାରା ପାଣ୍ଡବମାନେ ଦ୍ରୌପଦୀଙ୍କ ସହିତ ମୁକ୍ତ ହୋଇଥିଲେ । ସେ କାଳରେ ହାରିଥିବା ସମସ୍ତ ଧନସମ୍ପତ୍ତି ଫେରିପାଇଥିଲେ । କିନ୍ତୁ ସେ ସମସ୍ତ ନିଷ୍ଫଳ ହୋଇଛି । ଦୁର୍ଯୋଧନ ଓ ତାଙ୍କର କୁଚକ୍ରୀ ଗୋଷ୍ଠୀର ଚକ୍ରାନ୍ତ ଫଳରେ ପୁଣିଥରେ ସେହି କପଟ ଖେଳର ସମାପ୍ତ ହୋଇଛି । ପରିଣାମରେ ପାଣ୍ଡବମାନଙ୍କର ବନବାସ ।

ଧୃତରାଷ୍ଟ୍ରଙ୍କ ଭଣ୍ଡାରରେ ଏହି କ୍ଷୋଭ । କ୍ରୋଧରେ ତାଙ୍କର ଓଠ ଥରେ ନ୍ତୁ । କ'ଣ କାହାକୁ କହିବେ ? ମନେ ଦାରୁଣ ଯନ୍ତ୍ରଣାରେ ଦଗ୍ଧ ହେଉଛନ୍ତି ।

ଏ ଗାଂଡୀବ ଧାରୀ ଭୀମ ଅର୍ଜୁନମାନଙ୍କ ମଧ୍ୟରେ ଯେପରି କଳହ ନ ହୁଏ ସେ ବାବଦରେ ସମସ୍ତ ଚେଷ୍ଟା କରି ଆସିଛନ୍ତି । ମାତ୍ର ତାଙ୍କର ଆଶା ସଫଳ ହୋଇ ନାହିଁ । ଦ୍ୟୁତ କ୍ରୀଡ଼ାର ସମାଧାନ ହେବା ପରବର୍ତ୍ତୀରେ ଗୁରୁତର ଆକାର ଧାରଣ କରିବାର ସମସ୍ତ ଲକ୍ଷଣ ସେ ଯେପରି ମନ ଚକ୍ଷୁରେ ଦେଖିପାରିଲେ । ଆଉ ତ କିଛି ଉପାୟ ନାହିଁ । ନୀରବରେ ପରିଣତିକୁ ଅପେକ୍ଷା କରି ରହିଲେ ।

ସମୟ ସ୍ରୋତ ବହିଯାଉଛି । ଏଥି ମଧ୍ୟରେ ପାଣ୍ଡବମାନଙ୍କର ବନବାସ ସଂପୂର୍ଣ୍ଣ ଶେଷ ହୋଇଛି । ଏକବର୍ଷ ଅଜ୍ଞାତ ବାସ ଶେଷ ହେବା ଉପରେ । ଅଜ୍ଞାତ ବାସ ସମୟରେ ପାଣ୍ଡବମାନଙ୍କୁ ଚିହ୍ନଟ କରିବା ପାଇଁ ଦୁର୍ଯ୍ୟୋଧନ ତତ୍ପର ହୋଇଉଠିଲେ । କାରଣ ଯଦି ସେମାନେ ଧରାପଡ଼ିଯାନ୍ତି, ପୁଣି ବାରବର୍ଷ ବନବାସ । ଏହି ସୁଯୋଗର ସଦ୍‌ବ୍ୟବହାର କରିବାପାଇଁ ପାଣ୍ଡବମାନଙ୍କୁ ଠାବକରିବା ପାଇଁ ବିଭିନ୍ନ ସ୍ଥାନକୁ ଦୂତ ପଠାଇଲେ । ଦୂତମାନେ ବହୁଚେଷ୍ଟାପରେ ଫେରିଆସି କହିଦେଲେ ପାଣ୍ଡବମାନଙ୍କର ଚିହ୍ନ କିଛି ନାହିଁ । କେବଳ ମତ୍ସ୍ୟ ଦେଶକୁ ଯେଉଁ ଦୂତ ଯାଇଥିଲା ସେ ଆସି ଜଣାଇଲା କୌଣସି ଏକ ଗନ୍ଧର୍ବ କୀଚକକୁ କୌଣସି ଜଣେ ସ୍ତ୍ରୀଲୋକ ପାଇଁ ହତ୍ୟା କରିଛି ।

ଏହି ସମ୍ବାଦରେ ଦୁର୍ଯ୍ୟୋଧନଙ୍କ ଯେପରି ଅକୂଳ ସାଗରରେ କୂଳ, ମିଳିଲା । ଯନ୍ତ୍ରଣାର ଘନ ଅନ୍ଧକାର ମଧ୍ୟରେ ମୁକ୍ତି ପାଇଁ ଯେପରି କ୍ଷଣପ୍ରଭାର ଝଲକ ଉକୁଟି ଉଠିଲା । ସେ ଜାଣିଲେ କୀଚକ ବୀରଙ୍କୁ ବାହୁଯୁଦ୍ଧରେ ହତ୍ୟା କରିବା ଅସମ୍ଭବ । ଏହା କେବଳ ଭୀମଙ୍କଦ୍ୱାରା ହୋଇପାରେ । ଯଉ ଯେଉଁ ସ୍ତ୍ରୀପାଇଁ ଏହାହେଲା ସେ ହେଉଛନ୍ତି ଯେତେଦୂର ସମ୍ଭବ ଦ୍ରୌପଦୀ ।

କପରି ଜାଣିବ ?

ମତ୍ସ୍ୟ ଦେଶର ରାଜା ବିରାଟ । ହେଲେ ମଧ୍ୟ ସେ ନିଜର ରାଜ୍ୟ ରକ୍ଷା ପାଇଁ ତାଙ୍କର ସେନାପତି କୀଚକ ଉପରେ ସର୍ବଦା ନିର୍ଭର କରିଥାନ୍ତି । ସେହି କୀଚକ ଆଉ ଇହ ଜଗତରେ ନାହିଁ । ବିରାଟ ବର୍ତ୍ତମାନ ନିଃସହାୟ । ତାଙ୍କର ଅଛି ଅସଂଖ୍ୟ ଗାଈ । ସେମାନଙ୍କୁ ଯଦି ହରଣ କରାଯାଏ ତେବେ ସେ ତାର ପ୍ରତିରୋଧ କରିପାରିବେ ନାହିଁ । ପାଣ୍ଡବମାନେ ତାଙ୍କ ପାଖରେ ଥିଲେ ନିଶ୍ଚୟ ଏହି ଅନ୍ୟାୟ କାର୍ଯ୍ୟର ବିରୋଧ କରିବାପାଇଁ ବାହାରି ପଡ଼ିବେ । ଏହାଦ୍ୱାରା ତାଙ୍କର ମନୋବାଞ୍ଛା ପୂରଣ ହେବ । ପାଣ୍ଡବମାନେ ଧରାପଡ଼ି ପୁଣି ବନବାସ ଯିବେ । କି ଚମତ୍କାର ଯୋଜନା ! ଦୁର୍ଯ୍ୟୋଧନ ଅତ୍ୟନ୍ତ ସନ୍ତୋଷ ଲାଭ କଲେ ।

କୌରବ ସେନା ପ୍ରସ୍ତୁତ ହେଲେ । ସେନାଚାଳନା କଲେ ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଅଶ୍ୱତ୍ଥାମା ପ୍ରଭୃତି ବୀର ପୁଙ୍ଗବମାନେ ।

ଧୀରେ ଧୀରେ କୌରବ ସୈନ୍ୟ ବିଦ୍ୟୁତ୍ ବେଗରେ ମତ୍ସ୍ୟରାଜ୍ୟର ଉତ୍ତରଦିଗ ଆକ୍ରମଣ କରି ଲକ୍ଷ ଲକ୍ଷ ଗାଈ ଅଡ଼ାଇ ଆଣିଲେ । ଏ ଦୁଃସମ୍ବାଦ ମତ୍ସ୍ୟରାଜ ବିରାଟଙ୍କ ରାଜଧାନୀରେ ପହଞ୍ଚିଲା । ସେତେବେଳକୁ ବିରାଟରାଜା ରାଜଧାନୀରେ ଅନୁପସ୍ଥିତ । ଆଉ ସୈନ୍ୟ ସାମନ୍ତ କେହି ନାହାନ୍ତି । ସମସ୍ତେ ଅନ୍ୟ ଯୁଦ୍ଧରେ ବ୍ୟାପୃତ । ରାଜପ୍ରାସାଦରେ ଥାଆନ୍ତି କେବଳ ବିରାଟଙ୍କ ପୁଅ ଉତ୍ତର । ସେ କଣ କୁରୁ ସୈନ୍ୟ-ସମୁଦ୍ରର ସମ୍ମୁଖୀନ ହୋଇପାରିବେ ?

ବହୁତ ଆଲୋଚନା ପରେ ସ୍ଥିର ହେଲା ବୃହନ୍ନଳା ଉତ୍ତରଙ୍କର ସାରଥି ହେବେ ଏବଂ ଦୁଇଜଣ କୌରବମାନଙ୍କ ହାତରୁ ଗୋଧନ ଉଦ୍ଧାର କରିବେ ।

ବୃହନ୍ନଳାଙ୍କର ଶକ୍ତି ଏଣୁ ଉତ୍ତର ଜାଣନ୍ତି ! ଶମୀର କୋଟରରେ ସେ ଧନୁ ଥୋଇଥିଲେ । ରଥ ଚାଲିଲା । ଏହାର ଶବ୍ଦରେ ଚତୁର୍ଦ୍ଦିଗ ପ୍ରତିଧ୍ୱନିତ ହେଲା । ଶଙ୍ଖଧ୍ୱନି ସଙ୍ଗେ ଗାଣ୍ଡୀବର ଟଙ୍କାର ।

ଦ୍ରୋଣ ଜାଣିପାରିଲେ ଅର୍ଜୁନ ଆସୁଛନ୍ତି । ସେମାନଙ୍କୁ ସାବଧାନ ହେବାକୁ ପଡ଼ିବ । ମାତ୍ର ତାଙ୍କ କଥା କେହି ଶୁଣିଲେ ନାହିଁ । କର୍ଣ୍ଣ ବାହାରିଆସି କହିଲେ— ସବୁବେଳେ ଖାଲି ଅର୍ଜୁନ, ଆଉ ଯେପରି କେହି ବୀର ନାହାନ୍ତି ।

ଏଥିରେ ସମସ୍ତେ ଅସନ୍ତୁଷ୍ଟ ହେଲେ । ଦ୍ରୋଣଙ୍କ ପୁତ୍ର ଅଶ୍ୱତ୍ଥାମାଙ୍କ ରାଗ ବାଧିଲା । ସେ କର୍ଣ୍ଣଙ୍କ ସହିତ ବାକ୍‌ଯୁଦ୍ଧରେ ପ୍ରବୃତ୍ତ ହେଲେ ।

ଭୀଷ୍ମ ଦେଖିଲେ, ମହା ବିପଦ । ଅର୍ଜୁନ ଅଦ୍ୱିତୀୟ ବୀର । ତାଙ୍କ ସହିତ ଯୁଦ୍ଧ କରିବାକୁ ହେଲେ ସୈନ୍ୟମାନଙ୍କ ମଧ୍ୟରେ ଶୃଙ୍ଖଳା ଏକାନ୍ତ ଆବଶ୍ୟକ । ବିଶୃଙ୍ଖଳ ଓ ଅସନ୍ତୁଷ୍ଟ ସୈନ୍ୟମାନଙ୍କୁ ନେଇ କୌଣସି ଯୁଦ୍ଧରେ ଜୟଲାଭ କରାଯାଇ ନ ପାରେ । ପ୍ରାମାଣ୍ୟରେ ସେ କହିଲେ—

ବିଜ୍ଞବ୍ୟକ୍ତିମାନେ ସେମାନଙ୍କର ଶିକ୍ଷକଙ୍କ ପ୍ରତି କଦାପି ଅସମ୍ମାନ ପ୍ରଦର୍ଶନ କରନ୍ତି ନାହିଁ । ପରିସ୍ଥିତି, ସମୟ, ସ୍ଥାନ ବିଷୟରେ ଭଲଭାବେ ଆଲୋଚନା କରି ଯୁଦ୍ଧରେ ପ୍ରବୃତ୍ତ ହେବା ବିଧେୟ । ବେଳେ ବେଳେ ପଣ୍ଡିତ ଓ ବିଜ୍ଞ ବ୍ୟକ୍ତିମାନେ ମଧ୍ୟ ନିଜ ବିଷୟରେ ବିବେଚନା କରିବାର ସାମର୍ଥ୍ୟ ହରାଇଥାନ୍ତି । ଦୁର୍ଯ୍ୟୋଧନ ଦେଖନ୍ତୁ ଯେ କେଉଁ ବୀର ସହିତ ଯୁଦ୍ଧରେ ସମ୍ମୁଖୀନ ହେବାକୁ ସାହସ ଧାରଣ କରି ପାରୁ ନାହାନ୍ତି । ଏହି ଗୁରୁତ୍ୱପୂର୍ଣ୍ଣ ମୁହୂର୍ତ୍ତରେ ନିଜ ନିଜ ମଧ୍ୟରେ ବିଭେଦ ସୃଷ୍ଟି କରିବା ଅନୁଚିତ । ଦ୍ରୋଣ ଓ ଅଶ୍ୱତ୍ଥାମାଙ୍କ ବୀରତ୍ୱ କଥା କିଏ ନ ଜାଣେ ! ଯଦି ଆମମାନେ ଆମମାନଙ୍କ ମଧ୍ୟରେ ଏହି ମତାନୈକ୍ୟ ଭୁଲି ସମ୍ମିଳିତ ଭାବରେ ଅର୍ଜୁନଙ୍କର ସମ୍ମୁଖୀନ ହେବା, ତେବେ ବିଜୟ ଲାଭର ସମ୍ଭାବନା ଅଧିକ —ନଚେତ୍ ପରାଜୟ ସୁନିଶ୍ଚିତ ।

ପୁଣି ଦୁର୍ଯ୍ୟୋଧନଙ୍କୁ ଲକ୍ଷ୍ୟ କରି କହିଲେ—ରାଜନ୍ ! ତୁମ ସମ୍ମୁଖରେ ଅର୍ଜୁନ । ଯେଉଁ ମୁହୂର୍ତ୍ତରେ ତାଙ୍କର ଦେବଦତ୍ତ ଶଙ୍ଖ ବାଜି ଉଠିଲା ସେତିକିବେଳୁ ପାଣ୍ଡବମାନଙ୍କର ଅଜ୍ଞାତ ବାସ ଶେଷ ହୋଇଛି । ତୁମେ ଯେ କହୁଛ ଅଜ୍ଞାତବାସ ଶେଷ ହୋଇ ନାହିଁ । ଅର୍ଜୁନ ଚିହ୍ନାହେଲେ ପୁଣି ବାରବର୍ଷ ବନବାସ ଯିବେ, ତାହା ସମ୍ପୂର୍ଣ୍ଣ ଭୁଲ । ବର୍ତ୍ତମାନ ସୁଦ୍ଧା ସମୟ ଅଛି । ମୁଁ ପୁଣି ଥରେ କହୁଛି ପାଣ୍ଡବମାନେ ତୁମର ଭାଇ । ଶାନ୍ତିପୂର୍ଣ୍ଣ ଭାବରେ କଳହର ସମାଧାନ କରି ଶାନ୍ତିରେ ରୁହ—ଏହା ମୋର ଆନ୍ତରିକ ଇଚ୍ଛା । ନାହିଁ ଯଦି ମୋ କଥା ନ ମାନି ଯୁଦ୍ଧରେ ପ୍ରବୃତ୍ତ ହୁଅ ତେବେ ପରିଣତି ଭୟାବହ ହେବ । ସମ୍ପୂର୍ଣ୍ଣରୂପେ ତୁମେମାନେ ନିଶ୍ଚିହ୍ନ ହୋଇଯିବ—ଯୁଦ୍ଧ କେତେବେଳେ ହେଲେ ମଙ୍ଗଳକର ନୁହେଁ—ସମସ୍ତ ଅମଙ୍ଗଳକର ଉତ୍ସ, ମନେ ରଖିଥିବ ।

ଶାନ୍ତିପାଇଁ ପିତାମହ କିପରି ବ୍ୟାକୁଳ ଉଲ୍ଲିଖିତ ଘଟଣାରୁ ଜଣାଯାଏ । କେହି କେହି ହୁଏତ ପାଣ୍ଡବମାନଙ୍କ ପ୍ରତି ଅତ୍ୟଧିକ ସ୍ନେହଶୀଳ ବୋଲି ଅଭିଯୋଗ କରିଥାନ୍ତି, ମାତ୍ର ତା ନୁହେଁ । ସେ ସମସ୍ତଙ୍କର ପିତାମହ । ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖନ୍ତି । ଉଭୟ ପାଣ୍ଡବ ଓ କୌରବମାନେ କିପରି ଆନନ୍ଦରେ ଶାନ୍ତିରେ ରହିବେ ତାଙ୍କର ଇଚ୍ଛା । ଏହି ଇଚ୍ଛା ପୂରଣ କରିବା ଦିଗରେ ପାଣ୍ଡବମାନେ ସାଧ୍ୟପର୍ଯ୍ୟନ୍ତ ଚେଷ୍ଟା କରୁଥିଲେ, ମାତ୍ର ଦୁର୍ଯ୍ୟୋଧନ ପିତାମହଙ୍କ ସତ୍ ଉପଦେଶ କେବେ ଶୁଣିବାକୁ ପ୍ରସ୍ତୁତ ନୁହନ୍ତି; ଏପରିକି ତାଙ୍କର ଉପଦେଶ ଅମାନ୍ୟ କରିବା ଦିଗରେ ସର୍ବଦା ଚେଷ୍ଟିତ । ଗୁରୁଜନମାନେ ଯେକୌଣସି ପରିବାରର ବାଧ୍ୟ ସନ୍ତାନମାନଙ୍କ ପ୍ରତି ଯେତିକି ପରିମାଣରେ ସ୍ନେହ ପ୍ରଦର୍ଶନ କରିଥାନ୍ତି ଅବାଧ୍ୟ ସନ୍ତାନମାନଙ୍କ ପ୍ରତି ସେତିକି ବୀତସ୍ପୃହ ହୋଇପଡ଼ନ୍ତି—ଏହି ଜାଗତିକ ନିୟମରୁ ପିତାମହ ବହିର୍ଭୂତ ହୁଅନ୍ତେ କିପରି ?

## ● ସେନାପତିରୂପେ

ଅଜ୍ଞାତ ବାସ ଶେଷ ହେଲା । ବିରାଟ ରାଜା ପାଣ୍ଡବମାନଙ୍କର ପରିଚୟ ପାଇବା ପରେ ନିଜକୁ ଧନ୍ୟ ମନେକଲେ । ଏହି ବନ୍ଧୁତାକୁ ଚିରସ୍ଥାୟୀ କରିବା ପାଇଁ ନିଜର କନ୍ୟା ଉତ୍ତରାଙ୍କୁ ଅର୍ଜୁନଙ୍କ ସହିତ ବିବାହ ଦେବାପାଇଁ ନିଜର ଇଚ୍ଛା ପ୍ରକାଶ କଲେ । ଅର୍ଜୁନ ରାଜିହେଲେ ନାହିଁ । କହିଲେ ଉତ୍ତରା ମୋର ଛାତ୍ରୀ । ନୃତ୍ୟବିଦ୍ୟା ଶିକ୍ଷା କରିଛି । ମୁଁ ତାହାର ଗୁରୁ । ସେ ମୋର କନ୍ୟା ତୁଲ୍ୟ । ତେବେ ରାଜା ଯଦି ଇଚ୍ଛା କରନ୍ତି ମୋର ପୁତ୍ର ଅଭିମନ୍ୟୁ ସହିତ ଉତ୍ତରାଙ୍କର ବିବାହ ହୋଇପାରେ ।

ବିରାଟ ରାଜା ଅତି ଆଗ୍ରହରେ ଏହି ପ୍ରସ୍ତାବ ଗ୍ରହଣ କଲେ ।

ଏହି ଶୁଭ ସମ୍ବାଦ ଦ୍ୱାରିକାକୁ ପଠାଗଲା । ପଞ୍ଚାଳର ରାଜା ଦ୍ରୁପଦ ମଧ୍ୟ ଏହି ଉତ୍ସବକୁ ନିମନ୍ତ୍ରିତ ହେଲେ ।

ଯଥାସମୟରେ ଦ୍ୱାରକାର କୃଷ୍ଣ ବଳରାମ ଆସିଲେ । ଦ୍ରୁପଦ ସଖା ଏହି ଉତ୍ସବରେ ଯୋଗଦେଲେ । ମହା ସମାରୋହରେ ଅଭିମନ୍ୟୁଙ୍କ ସହିତ ଉତ୍ତରାଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ ହେଲା ।

ବର୍ତ୍ତମାନ ପାଣ୍ଡବମାନେ ସେମାନଙ୍କର ରାଜ୍ୟ କିପରି ଫେରପାଇବେ ଆଲୋଚନା ହେଲା । ଆଲୋଚନା ବେଳେ କେହି କେହି ମତ ପ୍ରକାଶ କଲେ, ଯୁଦ୍ଧ ବିନା ପାଣ୍ଡବମାନେ ରାଜ୍ୟୋଦ୍ଧାର କରିବା ସମ୍ଭବ ନୁହେଁ । ଶ୍ରୀକୃଷ୍ଣଙ୍କର ମତ ଭିନ୍ନ । ସେ କହିଥିଲେ ଯୁଦ୍ଧତ ନିଶ୍ଚିତ ହେବ । ତତ୍ପୂର୍ବରୁ ଶାନ୍ତି ପ୍ରସ୍ତାବ ଦିଆଯାଉ । ହସ୍ତିନାପୁରରେ ଭୀଷ୍ମ ଦ୍ରୋଣ ପ୍ରଭୃତି ବିଜ୍ଞ ବ୍ୟକ୍ତିମାନେ ଅଛନ୍ତି । ସେମାନଙ୍କର ମତାମତ ଜାଣିବା ଦରକାର । ହଠାତ୍ ଯଦି ଯୁଦ୍ଧ ଘୋଷଣା କରିଦିଆଯାଏ ଲୋକେ ଆମକୁ ଦୋଷ ଦେବେ । ଶାନ୍ତି ପାଇଁ ସବୁଚେଷ୍ଟା ଯଦି ବିଫଳ ହୁଏ ତେବେ ଯୁଦ୍ଧ ଅନିବାର୍ଯ୍ୟ । ତେବେ ସେ ପରିସ୍ଥିତିରେ ଆମ୍ଭେମାନେ ଲୋକ ନିନ୍ଦାରୁ ପାରପାଇବା ।

ଶ୍ରୀକୃଷ୍ଣଙ୍କ ପ୍ରସ୍ତାବ ଅନୁସାରେ ଭାଇଭାଇ ମଝିରେ ଶାନ୍ତି ପ୍ରତିଷ୍ଠା ପାଇଁ ପାଣ୍ଡବମାନଙ୍କ ପକ୍ଷରୁ ଦୂତ ପଠାଗଲା । ଫଳ କିଛି ହେଲା ନାହିଁ । ଶ୍ରୀକୃଷ୍ଣ ନିଜେ ଦୂତ ରୂପେ ଗଲେ । ପାଣ୍ଡବ ପାଞ୍ଚ ଭାଇଙ୍କ ପାଇଁ ପାଞ୍ଚ ଖଣ୍ଡ ଗାଆଁ ମାଗିଲେ । ଦୁର୍ଯ୍ୟୋଧନର ଏକା ଜିଦ୍—ବିନାଯୁଦ୍ଧେ ଦେବି ନାହିଁ ସୂଚ୍ୟଗ୍ର ମେଦିନୀ ।

ଦୁର୍ଯ୍ୟୋଧନଙ୍କୁ କହି ତ କିଛି ଲାଭ ନାହିଁ । ପିତାମହ ଭୀଷ୍ମ ଧୃତରାଷ୍ଟ୍ରଙ୍କୁ ବହୁତ ବୁଝାଇ କହିଲେ । ଦେଖ ଧୃତରାଷ୍ଟ୍ର, ତୁମର ପୁତ୍ରମାନେ ବଡ଼ ଭୁଲ କରୁଛନ୍ତି । ପାଣ୍ଡବମାନେ ସେମାନଙ୍କ ନ୍ୟାଯ୍ୟ ରାଜ୍ୟ ନପାଇଲେ ଯୁଦ୍ଧ ଅବଶ୍ୟମ୍ଭାବୀ । ଯୁଦ୍ଧ ହେଲେ କୃଷ୍ଣ ଓ ଅର୍ଜୁନଙ୍କ ସମ୍ମୁଖରେ ଛିଡ଼ା ହେବା ଅସମ୍ଭବ । କର୍ଣ୍ଣ ପାଣ୍ଡବମାନଙ୍କୁ ବିନାଶ କରିବା ପାଇଁ ଯେ ଗର୍ବ କରୁଛନ୍ତି ତାହା କେବଳ କୌରବମାନଙ୍କୁ ଧ୍ୱଂସମୁଖରେ ପକାଇବ । ସେତେବେଳେ ଅର୍ଜୁନ ବିରାଟ ରାଜ୍ୟ ଆକ୍ରମଣବେଳେ ତୁମର ପୁତ୍ରମାନଙ୍କୁ ଶୋଚନୀୟ ଭାବରେ ପରାଜିତ କରିଥିଲେ, ସେତେବେଳେ କର୍ଣ୍ଣ କଣ କରିପାରିଲେ ? ଗନ୍ଧର୍ବମାନେ ତୁମ ପୁତ୍ରଙ୍କୁ ବନ୍ଦୀକଲାବେଳେ କିଏ ତାଙ୍କୁ ରକ୍ଷା କରିଥିଲେ ? କର୍ଣ୍ଣ ନା ଅର୍ଜୁନ । ଏହିସବୁ ବିଚାର କରି କାର୍ଯ୍ୟ କର, ନଚେତ ଧ୍ୱଂସ ଅନିବାର୍ଯ୍ୟ ।

ପିତାମହଙ୍କର ଏହି ଚେତାବନୀ କେହି ଶୁଣିଲେ ନାହିଁ । ଶ୍ରୀକୃଷ୍ଣଙ୍କ ଶାନ୍ତି ସ୍ଥାପନ ଚେଷ୍ଟା ବିଫଳ ହେଲା ।

ଉଭୟ ପକ୍ଷ ଏକ ଧ୍ୱଂସକାରୀ ଯୁଦ୍ଧପାଇଁ ସଜବାଜ ହେଲେ ।

ପୂର୍ବରୁ ଉଭୟ ପକ୍ଷ ଯୁଦ୍ଧ ପାଇଁ ପ୍ରସ୍ତୁତ ଥିଲେ । ତେଣୁ ସୈନ୍ୟ ସଜ୍ଜା କରିବା ପାଇଁ ଅଧିକ ସମୟ ଲାଗିଲା ନାହିଁ ।

ସୈନ୍ୟ ପରିଚାଳନା ପାଇଁ ସେନାପତି ଆବଶ୍ୟକ । ଭୀଷ୍ମ କୌରବ ସୈନ୍ୟମାନଙ୍କର ଏବଂ ଦ୍ରୁପଦଙ୍କ ପୁତ୍ର ଧୃଷ୍ଟଦ୍ୟୁମ୍ନ ପାଣ୍ଡବ ସୈନ୍ୟର ସେନା ଚାଳନାର ଦାୟିତ୍ୱ ନେବାପାଇଁ ସ୍ଥିର ହେଲା ।

ସେନାପତି ପଦରେ ନିଯୁକ୍ତ ହେବାପରେ ଭୀଷ୍ମ ଦୁର୍ଯ୍ୟୋଧନଙ୍କୁ ସ୍ପଷ୍ଟ କହିଦେଲେ ଧୃତରାଷ୍ଟ୍ରଙ୍କ ପୁତ୍ର ଓ ପାଣ୍ଡୁଙ୍କ ପୁତ୍ରମାନଙ୍କୁ ମୁଁ ସମଚକ୍ଷୁରେ ଦେଖେ । ମୋ ଶକ୍ତିରେ ସର୍ବସ୍ୱ ସମ୍ମାନେ ମୁଁ ସୈନ୍ୟ ପରିଚାଳନା କରିବି । ଏଥିରେ କୌଣସି ହେଳା ପ୍ରଦର୍ଶନ କରିବି ନାହିଁ । ମୁଁ ପ୍ରତିଜ୍ଞା କରୁଛି ପ୍ରତ୍ୟେକ ଦିନ ଦଶହଜାର ପାଣ୍ଡବ ସୈନ୍ୟ ମୋ ଶରରେ ନିହତ ହେବେ । ମାତ୍ର ମୁଁ ପାଣ୍ଡବ ମାନଙ୍କୁ ହତ୍ୟା କରିପାରିବି ନାହିଁ । କାରଣ ଏପରି ପ୍ରସ୍ତାବ ସ୍ୱୀକୃତ ମୁଁ କରି ନାହିଁ । ଏକଦ୍ୱନ୍ଦ୍ୱୀତା ଯୁଦ୍ଧରେ ଅନ୍ୟ ସେଭଳି ସବୁ ବିଷୟରେ ଦୃଷ୍ଟିଦେବାର କଥା ସେଥିରେ କୌଣସି ତ୍ରୁଟି ବିଚ୍ୟୁତି ଘଟିବ ନାହିଁ ।

ଆଉ ଗୋଟିଏ କଥା । କର୍ଣ୍ଣ ନିଜର ବଡ଼ିମା ସବୁବେଳେ ପ୍ରକାଶ କରିଥାନ୍ତି । ଏହାକୁ ସେଥିରୁ ପୂର୍ବରୁ ଜାଣେ । ସେ ମୋତେ ପସନ୍ଦ କରନ୍ତି ନାହିଁ ବା ମୋର ସ୍ୱଭାବ ତାଙ୍କର ରୁଚି ଅନୁକୂଳ ନୁହେଁ । ଯଦି ସତରେ ସେ ସେନାପତି ହେଲେ ଯୁଦ୍ଧରେ ତୁମର ମଙ୍ଗଳ କରିବା ସୁନିଶ୍ଚିତ ତେବେ ଯୁଦ୍ଧ ଆରମ୍ଭରୁ ତାଙ୍କୁ ସେନାପତି ଦାୟିତ୍ୱ ଦେବା ଉଚିତ । ଏପରି କ୍ଷେତ୍ରରେ ମୋର କୌଣସି ଆପତ୍ତି ନାହିଁ ।

ଭୀଷ୍ମଙ୍କର ଯୁଦ୍ଧର ଅବ୍ୟବହିତ ପୂର୍ବ ମନୋଭାବ କଣ ଥିଲା ଏଥିରୁ ସ୍ପଷ୍ଟ । ଭୀଷ୍ମ ଥିଲେ କୌରବ ଗୌରବର ସୁଦୃଢ଼ ସ୍ତମ୍ଭ । ଅନ୍ୟାୟ କାର୍ଯ୍ୟାବଳୀ ବା ମାତ୍ସ୍ୟନ୍ୟାୟ ରାଜନୀତିର ସେ ପକ୍ଷପାତୀ ନ ଥିଲେ । ଉଭୟ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ କିପରି ଶାନ୍ତି ପ୍ରତିଷ୍ଠା ହେବ, ଉଭୟେ କିପରି ଆନନ୍ଦରେ ଶାନ୍ତିରେ ରହନ୍ତୁ—ଏହା ତାଙ୍କର ଅନ୍ତରର ଇଚ୍ଛା ଥିଲା । ମାତ୍ର ଏହା କୌଣସିମତେ ସମ୍ଭବ ନହେଲା, ଯୁଦ୍ଧ ହେବାର ସ୍ଥିର ହେଲା ବୃଦ୍ଧ ବୟସ ସ୍ଥଳରେ ସମ୍ମିଳିତ ହୋଇପଡ଼ିଲେ ଏବଂ ତାଙ୍କର ମନୋଭାବ ସ୍ପଷ୍ଟଭାବରେ ବ୍ୟକ୍ତ କରିଥିଲେ ।

ଏଥିରୁ ସୁସ୍ପଷ୍ଟ ଯେ ପୂର୍ବ କାଳରେ ମଧ୍ୟ ବିଶିଷ୍ଟ ବ୍ୟକ୍ତିମାନଙ୍କ ମଧ୍ୟରେ ପରସ୍ପର ପ୍ରତି ଈର୍ଷାଭାବ ଥିଲା । ଭୀଷ୍ମ ଏହି ପୂର୍ବରୁ କୌଣସି ଦାୟିତ୍ୱ ନେବା ପାଇଁ ମନା କରିଦେଇ-ଥାଆନ୍ତେ, ମାତ୍ର ହସ୍ତିନାର ରାଜ ସିଂହାସନରେ ଯିଏ ବସନ୍ତୁ ନା କାହିଁକି ତାଙ୍କୁ ପୂର୍ଣ୍ଣ ପ୍ରାଣରେ ସାହାଯ୍ୟ କରିବା ପାଇଁ ସେ ତାଙ୍କର ସ୍ୱର୍ଗତ ପିତାଙ୍କ ନିକଟରେ ପ୍ରତିଶ୍ରୁତିବଦ୍ଧ ହୋଇଥିଲେ । ଘଟଣାକ୍ରମେ ଦୁର୍ଯ୍ୟୋଧନ ହସ୍ତିନାର ରାଜ ସିଂହାସନ ଅଧିରୋହଣ କଲେ । ତାଙ୍କର ବ୍ୟବହାରରେ ସେ ସନ୍ତୁଷ୍ଟ ନ ଥିଲେ ମଧ୍ୟ ପୂର୍ବ ପ୍ରତିଶ୍ରୁତି ଅନୁଯାୟୀ ସେ କୌରବ ସୈନ୍ୟଙ୍କର ସେନାପତି ହେବା ପାଇଁ ସର୍ତ୍ତମୂଳକ ସ୍ୱୀକୃତି ପ୍ରଦାନ କରିଥିଲେ ।

ଏହି ସେନାପତିଙ୍କ ମୃତ୍ୟୁ ପରେ ଦୁର୍ଯ୍ୟୋଧନ ଶେଷରେ ମାଣ୍ଡବ୍ୟଙ୍କୁ ତାଙ୍କ ସେନାପତିର ଦାୟିତ୍ୱ ଦେଇଥିଲେ ।

ଏଥିରୁ କର୍ଣ୍ଣଙ୍କ ଅପେକ୍ଷା ଭୀଷ୍ମଙ୍କ ଉପରେ ତାଙ୍କର ଯେ ଅଧିକ ଆସ୍ଥା ଥିଲା, ସ୍ପଷ୍ଟ ଜଣାଯାଏ ।

ସବୁ ପ୍ରସ୍ତୁତ । ଉଭୟ ପକ୍ଷର ସୈନ୍ୟମାନେ ଏକତ୍ର ହୋଇ ପ୍ରାଚୀନ ଯୁଦ୍ଧ-ପରମ୍ପରା ପ୍ରତି ସମ୍ମାନ ପ୍ରଦର୍ଶନ କରିବା ନିମନ୍ତେ ଦୃଢପ୍ରତିଜ୍ଞ ହେଲେ । ବର୍ତ୍ତମାନର ଯୁଦ୍ଧ ଓ ସେକାଳର ଯୁଦ୍ଧ ମଧ୍ୟରେ ସ୍ୱର୍ଗ ପାତାଳ ପ୍ରଭେଦ ପରିଲକ୍ଷିତ ହୁଏ । ଯୁଦ୍ଧ ଅର୍ଥ ଲୋକହତ୍ୟା, ଧନସମ୍ପତ୍ତି ନାଶ—ଏଥିରେ ସନ୍ଦେହ ନାହିଁ । ବର୍ତ୍ତମାନ ଯୁଦ୍ଧରେ କେହି ନିରାପଦ ନୁହନ୍ତି ବା ଏହା ସ୍ଥାନ ବିଶେଷରେ ଆବଦ୍ଧ ନୁହେଁ । ବର୍ତ୍ତମାନ ଯୁଦ୍ଧରେ ଯେଉଁ ମାରାତ୍ମକ ଅସ୍ତ୍ରଶସ୍ତ୍ର ବ୍ୟବହୃତ ହେଉଛି ତଦ୍ଦ୍ୱାରା କେବଳ ଦେଶର ନାଗରିକ ଯେ କ୍ଷତିଗ୍ରସ୍ତ ହେଉଛନ୍ତି ତା ନୁହେଁ, ଅନ୍ୟ ଦେଶର ନିରୀହ ଲୋକମାନେ ମଧ୍ୟ ଅସମୟରେ ପ୍ରାଣତ୍ୟାଗ କରୁଛନ୍ତି—କେତେ ଘରଦ୍ୱାର ଜଳିପୋଡ଼ି ଛାରଖାର ହୋଇଯାଉଛି । ହସ୍ପିଟାଲ ମଧ୍ୟ ଡାକ୍ତରଖାନାରେ ରୋଗୀମାନେ ଯୁଦ୍ଧର କରାଳକବଳରୁ ମୁକ୍ତ ନୁହନ୍ତି ।

ସେକାଳର ଯୁଦ୍ଧ ପ୍ରଣାଳୀ ସମ୍ପୂର୍ଣ୍ଣ ପୃଥକ୍ ଥିଲା । କୁରୁକ୍ଷେତ୍ର ଯୁଦ୍ଧରେ ପରମ୍ପରାରେ ପ୍ରତିଷ୍ଠିତ ଏହି ପ୍ରଣାଳୀ ଅନୁସୃତ ହୋଇଥିଲା । ଯୁଦ୍ଧ କୌଣସି ସ୍ଥାନରେ ହେଉଥିଲା । ଏହାର ଆରମ୍ଭ ସୂର୍ଯ୍ୟୋଦୟ ପରେ ଏବଂ ସୂର୍ଯ୍ୟାସ୍ତ ସଙ୍ଗେ ସଙ୍ଗେ ଯୁଦ୍ଧ ମଧ୍ୟ ସେଦିନ ପାଇଁ ଶେଷ ହେଉଥିଲା । ରାତିରେ ଉଭୟ ପକ୍ଷର ସୈନ୍ୟ ବା ସେନାପତିମାନେ ଏକତ୍ରିତ ହୋଇ ଖୁସି ଗପରେ ବ୍ୟାପୃତ ରହୁଥିଲେ । ବାହୁଯୁଦ୍ଧ ଦୁଇ ସମାନ ଯୋଦ୍ଧାଙ୍କ ମଧ୍ୟରେ ହେଉଥିଲା ଏବଂ ଏହି ଯୁଦ୍ଧର ନିୟମମାନ ଧର୍ମ ଅନୁସାରେ ପାଳିତ ହେଉଥିଲା । ଅଶ୍ୱାରୋହୀ ସୈନ୍ୟ କେବଳ ଅନ୍ୟ ଜଣେ ଅଶ୍ୱାରୋହଣ କରିଥିବା ସୈନ୍ୟଙ୍କୁ ଆକ୍ରମଣ କରିବା ବିଧିସଙ୍ଗତ ଥିଲା । ଅଶ୍ୱାରୋହୀ ସୈନ୍ୟ କୌଣସି ପଦାତିକ ସୈନ୍ୟକୁ ଆକ୍ରମଣ କରୁ ନ ଥିଲେ । ସେହିପରି ରଥାରୋହୀ ସୈନ୍ୟ ରଥାରୋହୀଙ୍କ ସହିତ, ଗଜାରୋହୀ ଗଜାରୋହୀ ସହିତ ଯୁଦ୍ଧରେ ବ୍ୟାପୃତ ରହୁଥିଲେ । ଯେଉଁମାନେ ପରାଜୟ ସ୍ୱୀକାର କରୁଥିଲେ ସେମାନେ ନିର୍ଭୟରେ ରହୁଥିଲେ ।

କୌଣସି ସୈନ୍ୟ ଯଦି ବିଶ୍ରାମ ନେଉଥିଲେ ବା ଅନ୍ୟ ସହିତ ଯୁଦ୍ଧରେ ବ୍ୟାପୃତ ଥିଲେ ସେମାନଙ୍କୁ ଅନ୍ୟଜଣେ ଆକ୍ରମଣ କରିବା ନିୟମ ବହିର୍ଭୂତ ଥିଲା ।

ସାଧାରଣତଃ ଏହି ସବୁ ନିୟମ କୁରୁକ୍ଷେତ୍ର ଯୁଦ୍ଧରେ ପାଳନ କରିବା ପାଇଁ ଯୁଦ୍ଧକ୍ଷେତ୍ରରେ ଏକତ୍ର ହୋଇଥିବା ସୈନ୍ୟମାନେ ଅଙ୍ଗୀକାରବଦ୍ଧ ହୋଇଥିଲେ । ଅବଶ୍ୟ କୁରୁକ୍ଷେତ୍ର ଯୁଦ୍ଧ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଯେ ଏହିସବୁ ନିୟମର ବ୍ୟତିକ୍ରମ ହୋଇ ନ ଥିଲା ତା ନୁହେଁ—ତେବେ ମୋଟ ଉପରେ ସେତେବେଳର ଯାହା ଏସବୁ ନିୟମ ପାଳିତ ହୋଇଥିଲା । ତେବେ ଯୁଦ୍ଧର ନିୟମଭଙ୍ଗ ଲକ୍ଷାଧିକ ଲୋକଙ୍କ ମୃତ୍ୟୁ

ସ୍ୱୀକାର କରୁଥିଲେ ଏବଂ ଯେଉଁ ଯୋଦ୍ଧା ଏହି ନିୟମ ଉଲ୍ଲଂଘନ କରୁଥିଲେ ସେ ଘୃଣାର ପାତ୍ର ବୋଲି ବିବେଚିତ ହେଉଥିଲେ ।

ଯୁଦ୍ଧର ଅବ୍ୟବହିତ ପୂର୍ବରୁ ପିତାମହ ଭୀଷ୍ମ ତାଙ୍କର ସୈନ୍ୟମାନଙ୍କୁ ଯେଉଁ ଉଦ୍‌ବୋଧନ ଦେଇଥିଲେ ତାହା ପ୍ରଣିଧାନ ଯୋଗ୍ୟ । ସେ ସୈନ୍ୟମାନଙ୍କୁ ସମ୍ବୋଧନ କରି କହିଲେ "ବୀରଗଣ, ସୁବର୍ଣ୍ଣ ସୁଯୋଗ ତୁମମାନଙ୍କ ସମ୍ମୁଖରେ । ଯୁଦ୍ଧରେ ଜୟଲାଭ କରି ଏହି ବିଶାଳ ରାଜ୍ୟ ଉପଭୋଗ କରିବ, ବା ମୃତ୍ୟୁ ବରଣ କରି ସ୍ୱର୍ଗଗାମୀ ହେବ । ମଧ୍ୟବର୍ତ୍ତୀ ପନ୍ଥା ନାହିଁ । ତୁମମାନଙ୍କୁ ସ୍ୱାଗତ ସମ୍ଭାଷଣ ଜଣାଇବା ପାଇଁ ସ୍ୱର୍ଗରେ ଇନ୍ଦ୍ର, ବରୁଣ ପ୍ରଭୃତି ଉଦ୍‌ବେଗର ସହିତ ଅପେକ୍ଷା କରିଛନ୍ତି । ତୁମମାନଙ୍କର ପୂର୍ବପୁରୁଷଙ୍କ ପଦାଙ୍କ ଅନୁସରଣ କର । କ୍ଷାତ୍ରଧର୍ମ ରକ୍ଷା କର । ଆନନ୍ଦର ସହିତ ଯୁଦ୍ଧ କରି ଯଶସ୍ୱୀ ହୁଅ ।

କୌଣସି କ୍ଷତ୍ରିୟ ରୋଗାକ୍ରାନ୍ତ ହୋଇ ମୃତ୍ୟୁ ବରଣ କରିବାକୁ ଇଚ୍ଛା କରେ ନାହିଁ; ଯୁଦ୍ଧରେ ନିଧନ ଶ୍ରେୟସ୍କର ମନେକରେ ।

ସୈନ୍ୟମାନଙ୍କୁ ଏହିପରି ଉତ୍ସାହିତ କରି ଭୀଷ୍ମ ଯୁଦ୍ଧବାଦ୍ୟ ବଜାଇବା ନିମିତ୍ତ ଆଦେଶ ଦେଲେ । ଯୁଦ୍ଧବାଦ୍ୟର ଶବ୍ଦରେ କୁରୁକ୍ଷେତ୍ର ନିନାଦିତ ହେଲା ।

ପାଣ୍ଡବମାନଙ୍କ ମଧ୍ୟରେ ଯୁଦ୍ଧ ଉତ୍ତେଜନା ଦେଖାଦେଲା ।

ଅର୍ଜ୍ଜୁନ କିନ୍ତୁ ଏଥିରେ ଉତ୍ତେଜିତ ହୋଇ ନ ଥିଲେ । ବରଂ ରଣକ୍ଷେତ୍ରରେ ଯୁଦ୍ଧାଭିଳାଷୀ ନିଜର ବନ୍ଧୁବାନ୍ଧବମାନଙ୍କୁ ଦେଖି ସେ ମ୍ରିୟମାଣ ହୋଇପଡ଼ିଲେ । ସେ ଭାବିଲେ, ନିଜର ବନ୍ଧୁବାନ୍ଧବମାନଙ୍କ ରକ୍ତରେ ରାଜ୍ୟଲାଭ ସ୍ପୃହଣୀୟ ନୁହେଁ; ଏହାଠାରୁ ନିଜର ନିଧନ ଶ୍ରେୟସ୍କର ମନେକଲେ । ତାଙ୍କ ହାତରୁ ଗାଣ୍ଡୀବ ଖସିପଡ଼ିଲା, ସର୍ବାଙ୍ଗ ଥରି ଉଠିଲା, ସେ ଜଡ଼ବତରେ ବସିପଡ଼ିଲେ ।

ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କର ଏପରି ଦୁରବସ୍ଥା ଦେଖି ବିଚଳିତ ହୋଇଉଠିଲେ । ଯୁଦ୍ଧ ପ୍ରତି ତାଙ୍କର ଆଗ୍ରହ ସୃଷ୍ଟି କରିବା ପାଇଁ ସେ ସେଠାରେ ଯେଉଁ ଉପଦେଶ ଦେଇଥିଲେ, ତାହା ଶ୍ରୀମଦ୍‌ଭଗବଦ୍‌ଗୀତାରେ ଲିପିବଦ୍ଧ ହୋଇଅଛି । ହଜାର ହଜାର ବର୍ଷ ଅତୀତ ହୋଇଥିଲେ ମଧ୍ୟ ଗୀତାବାଣୀ ଏବେ ମଧ୍ୟ ଜନମାନସକୁ ଉଦ୍‌ବୁଦ୍ଧ କରୁଛି ଏବଂ ଏହା ପୃଥିବୀର ଶ୍ରେଷ୍ଠ ଗ୍ରନ୍ଥ ଭାବରେ ବିବେଚିତ ହୋଇଅଛି ।

କୁରୁକ୍ଷେତ୍ର ଯୁଦ୍ଧଭୂମି । ପଶ୍ଚିମରେ କୌରବ ସୈନ୍ୟ ଓ ପୂର୍ବରେ ପାଣ୍ଡବ ସୈନ୍ୟ ଯୁଦ୍ଧ ପାଇଁ ପ୍ରସ୍ତୁତ । ଏତିକିବେଳେ ଧର୍ମପୁତ୍ର ଯୁଧିଷ୍ଠିର ନିରସ୍ତ୍ର ଭାବରେ କୌରବ ପକ୍ଷ ଆଡ଼କୁ ଅଗ୍ରସର ହେବାକୁ ଦେଖାଗଲା । ଯୁଧିଷ୍ଠିରଙ୍କର ଏହି ବିଚିତ୍ର ରୀତି ଉଭୟ ପାଣ୍ଡବ ଓ କୌରବ ସୈନ୍ୟଙ୍କ ମଧ୍ୟରେ ମିଶ୍ରିତ ପ୍ରତିକ୍ରିୟା ସୃଷ୍ଟି କରିଥିଲା । କୌରବମାନେ ଭାବିଲେ ସେମାନଙ୍କର ସୈନ୍ୟବଳ ଦେଖି ସେ ଡରିଯାଇଛନ୍ତି । ତେଣୁ ସନ୍ଧିପ୍ରସ୍ତାବ ଦେବ

ସେ ଅସ୍ତ୍ରପରି ହେଉଛନ୍ତି । ପାଣ୍ଡବମାନେ ଭାବିଲେ, ବୋଧହୁଏ ଜ୍ୟେଷ୍ଠ ଭ୍ରାତାଙ୍କର ମତିଭ୍ରମ ହୋଇଛି । ତାଙ୍କର ଆଶଙ୍କା, ସେ କୌରବମାନଙ୍କ ପାଖକୁ ଯାଉଛନ୍ତି ଯେକୌଣସି ସର୍ତ୍ତରେ ଯୁଦ୍ଧ ବନ୍ଦ କରିବା ସକାଶେ ।

ଯୁଧିଷ୍ଠିରଙ୍କର ମାଭ ସ୍ୱତନ୍ତ୍ର । ଯୁଦ୍ଧ ଆରମ୍ଭ ହେବାକୁ ଆଉ ବେଶୀ ଡେରି ନାହିଁ । ଆରର ପକ୍ଷରେ ପିତାମହ ଭୀଷ୍ମ, ଅସ୍ତ୍ର ଗୁରୁ ଦ୍ରୋଣ ଓ ଅନ୍ୟାନ୍ୟ ମାନ୍ୟଗଣ୍ୟ ବ୍ୟକ୍ତି ଅଛନ୍ତି । ଏପରି ଏକ ବନ୍ଧନ ପରିସ୍ଥିତିରେ ସମ୍ମୁଖୀନ ହେଲା ପରେ ଗୁରୁଜନମାନଙ୍କର ଆଶୀର୍ବାଦ-ସର୍ବଦା କାମ୍ୟ । ସେମାନଙ୍କର ଶୁଭାଶିଷ ବଳରେ ସେ ଯେ ନିଶ୍ଚିତ ଭାବରେ ଏହି ଅଗ୍ନି ପରୀକ୍ଷାରୁ ନିର୍ବିଘ୍ନରେ ଉତ୍ତୀର୍ଣ୍ଣ ହେବେ—ଏ ବିଶ୍ୱାସ ତାଙ୍କ ହୃଦୟରେ ଦୃଢ଼ୀଭୂତ ହୋଇଥିଲା ।

ଯୁଧିଷ୍ଠିର ଯାଇ ପ୍ରଥମେ ପିତାମହଙ୍କ ଚରଣ ବନ୍ଦନା କରି ଆଶୀର୍ବାଦ ଭିକ୍ଷାକଲେ । ପିତାମହଙ୍କ ମନରେ ବିପୁଳ ଆନନ୍ଦ । ସେ ଜାଣନ୍ତି ଯୁଧିଷ୍ଠିର ଧର୍ମର ଅବତାର । ଯୁଦ୍ଧ ପୂର୍ବରୁ ମଧ୍ୟ ସେ ଧର୍ମପଥରୁ ଟଳେ ବିଚ୍ୟୁତ ନ ହୋଇ ତାଙ୍କର ଆଶୀର୍ବାଦ ଭିକ୍ଷା କରିବାକୁ ଆସିଛନ୍ତି ।

ହର୍ଷ ଗଦ୍‌ଗଦ୍ ସ୍ୱରରେ ସେ ଆଶିଷ ବାଣୀ ଶୁଣାଇଲେ, ବତ୍ସ ଯାଓ ଜୟୀ ହୁଅ । ଯୁଦ୍ଧରେ ଜୟଲାଭ କରି ନିଷ୍କଣ୍ଟକ ରାଜ୍ୟ ଭୋଗ କର । ମୁଁ ମୁକ୍ତ ନୁହେଁ । କୌରବ-ମାନଙ୍କ ପକ୍ଷରେ ଯୁଦ୍ଧ କରିବା ମୋର ନୈତିକ ଦାୟିତ୍ୱ ।

ଯୁଧିଷ୍ଠିରଙ୍କ ମନ୍ଦରେ ଯୁଦ୍ଧର ଅବେଗ ଶ୍ରଦ୍ଧା । ସେ ଅତି ବିନୀତ ଭାବରେ କହିଲେ ? ସୂର୍ଯ୍ୟ ପଶ୍ଚିମ ଦିଗରେ ଉଦିତ ହୋଇପାରନ୍ତି, ସମୁଦ୍ର ଶୁଖିଯାଇପାରେ, ଗଙ୍ଗା ନଦୀରେ ପାଷାଣ ଭେଳା ଭାସିମରେ, ପର୍ବତରେ ପଦ୍ମଫୁଲ ଫୁଟିପାରେ, ସତ୍ୟଯୁଗ ଓ କଳି-ଯୁଗର ଭେଟ ହୋଇପାରେ; ଏସବୁ ଅସମ୍ଭବ ସମ୍ଭବ ହୋଇପାରେ; ମାତ୍ର ସନ୍ତଙ୍କ ବାକ୍ୟ କେବେ ଅନ୍ୟଥା ହୁଏ ନାହିଁ । ମୋପ୍ରତି ଆପଣଙ୍କ ଆଶୀର୍ବାଦ ଯେ କାର୍ଯ୍ୟକାରୀ ହେବ, ଏଥିରେ ମୋର ତିଳେମାତ୍ର ସନ୍ଦେହ ନାହିଁ । କିନ୍ତୁ ମୋର ଗୋଟିଏ ବିଷୟରେ ସନ୍ଦେହ ହେଉଛି । ଆପଣ ଦୁର୍ଯ୍ୟୋଧନଙ୍କ ପକ୍ଷର ସେନାପତି.ଅନନ୍ୟ ବ୍ରହ୍ମଚାରୀ, ମହାବୀର । ବଳରେ; ଶକ୍ତିରେ ମହାବୀର ପରଶୁରାମଙ୍କୁ ଜିଣିବାକୁ ସମର୍ଥ । ପିତୃ ଆଶୀର୍ବାଦରେ ଆପଣ ଆପଣଙ୍କ ଇଚ୍ଛାମୃତ୍ୟୁର ଅଧିକାରୀ । ଆପଣଙ୍କର ଶକ୍ତି ଅସୀମ । ଆପଣ ବିରୋଧରେ ଇନ୍ଦ୍ର ଧନୁ ଧରିବାକୁ ଅସମର୍ଥ । ଏପରି ପରିସ୍ଥିତିରେ କିଏ ଆମ୍ଭେମାନେ ଆପଣଙ୍କୁ ଜିଣିପାରିବୁ ! ଆପଣ ଅପରାଜିତ ରହିଲେ ଆମର ଯୁଦ୍ଧ ଜୟ କରିବା ସୁଦୂର ପରାହତ । ଏପରି ସଂସାରରେ କିଏ ବୀର ଅଛି ଯେ ସମ୍ମୁଖ ଯୁଦ୍ଧରେ ଆପଣଙ୍କୁ ହଟାଇ ଦେଇପାରିବ ! ଆପଣଙ୍କୁ ନ ଜିଣିଲେ ଆମକୁ ରାଜ୍ୟପ୍ରାପ୍ତି ହେବ କିପରି ?

ମହାଜ୍ଞାନୀ, ମହାବୀର ଭୀଷ୍ମ ଯୁଧିଷ୍ଠିରଙ୍କର ଶଙ୍କାଭାବ ବୁଝିପାରିଲେ । ତାଙ୍କର ସନ୍ଦେହ ମୋଚନ କରିବାକୁ ତାଙ୍କର ଅନ୍ତରର ଭାବ ପ୍ରକାଶ କଲେ ।

ମୁଁ କୌରବ ପକ୍ଷର ସେନାପତି । ଦଶଦିନ ଯାଏ ଯୁଦ୍ଧ କରିବି । ପ୍ରତ୍ୟେକ ଦିନ ଦଶହଜାର ପାଣ୍ଡବ ସୈନ୍ୟ ନିଧନ କରିବା ପାଇଁ ମୁଁ ପ୍ରତିଶ୍ରୁତି ଦେଉଛି । ଏହି ଦଶଦିନ ସେ କୌଣସି ପ୍ରକାରରେ ତୁମେ ତୁମର ସୈନ୍ୟ ରକ୍ଷା କର । ଦଶଦିନ ପରେ ମୋ ଆଗରେ ଶିଖଣ୍ଡୀକୁ ରଖି ଯୁଦ୍ଧ କର । ସେତେବେଳେ ମୁଁ ଅସ୍ତ୍ରତ୍ୟାଗ କରିବି । ଏଥିର ପ୍ରତ୍ୟୟ ଜନ୍ମିଲା ତ ? ତୁମମାନଙ୍କ ପାଇଁ ମୁଁ ଶରଶଯ୍ୟା କରିବି । ହେଲା ତ ?

ଯୁଧିଷ୍ଠିର ସନ୍ତୁଷ୍ଟ ହେଲେ । ଅନ୍ୟାନ୍ୟ ଗୁରୁଜନମାନଙ୍କ ଚରଣ ବନ୍ଦନା କରି ଆଶୀର୍ବାଦ ଭିକ୍ଷା କଲେ ।

କୁରୁକ୍ଷେତ୍ର ଯୁଦ୍ଧ ଆରମ୍ଭ ହେଲା । କି ଭୀଷଣ ସେ ଯୁଦ୍ଧ ! କୌରବ ପକ୍ଷରେ ସେନାପତି ରୂପେ ଭୀଷ୍ମ ଯେଉଁ ଯୁଦ୍ଧ ଆରମ୍ଭ କଲେ ସେଥିରେ ସ୍ୱର୍ଗର ଦେବତାମାନେ ମଧ୍ୟ ଭୀତ ହୋଇପଡ଼ିଲେ ।

ଭୀଷ୍ମ ଦୀର୍ଘ ଦଶଦିନ ଯୁଦ୍ଧ ଚଳାଇଲେ । ତାଙ୍କର ପ୍ରତିଶ୍ରୁତି ଅନୁସାରେ ପ୍ରତ୍ୟେକ ଦିନ ଦଶହଜାର ଲେଖାଏଁ ପାଣ୍ଡବ ସୈନ୍ୟଙ୍କୁ ସେ ନିଧନ କଲେ । ବେଳେ ବେଳେ ସେ ଏପରି ଶକ୍ତିଶାଳୀ ଶର ନିକ୍ଷେପ କରୁଥିଲେ ଯାହାକୁ ଅର୍ଜୁନଙ୍କ ପରି ଯୋଦ୍ଧା ପ୍ରତିହତ କରିବା ପାଇଁ ସମର୍ଥ ହେଉ ନ ଥିଲେ । ନବମ ଦିନର କଥା । ମହାବୀର ଭୀଷ୍ମ ଏକ ତୀକ୍ଷ୍ଣ ଶର ମନ୍ତ୍ରପୂତ କରି ନିକ୍ଷେପ କଲେ । କି ତେଜ ସେ ଶରର ! ଲାଗେ ଅବା ମୁହୂର୍ତ୍ତକ ମଧ୍ୟରେ ସାରା ପୃଥିବୀ ଏହି ଶର ତେଜରେ ଦଗ୍ଧ ହୋଇଯିବ ।

ଏହି ଶରକୁ ପ୍ରତିହତ କରିବା କ୍ଷମତା ଅର୍ଜୁନଙ୍କର ନ ଥିଲା । ସେ ରଥ ଉପରେ ଥରିବାକୁ ଲାଗିଲେ । କୃଷ୍ଣ ଦେଖିଲେ ମହା ବିପଦ ଉପସ୍ଥିତ । ଏହାରୁ ପାଣ୍ଡବ ସୈନ୍ୟମାନଙ୍କୁ ରକ୍ଷା କରିବାକୁ ହେବ । ସେ ସୁଦର୍ଶନ ଚକ୍ରକୁ ସ୍ମରଣ କଲେ । ଚକ୍ର ଆସି ମୁହୂର୍ତ୍ତକ ମଧ୍ୟରେ ଏହି ତେଜୀୟାନ ଶରକୁ କାଟି ଖଣ୍ଡ ଖଣ୍ଡ କରିଦେଲା ।

ନିଜର ଅମୋଘ ଶରର ଏ ଅବସ୍ଥା ଦେଖି ଭୀଷ୍ମ ମନେକଲେ, ଏହା କୃଷ୍ଣଙ୍କର କାର୍ଯ୍ୟ । ଯୁଦ୍ଧ ଆରମ୍ଭ ପୂର୍ବେ କୃଷ୍ଣ ପ୍ରତିଜ୍ଞା କରିଥିଲେ, ସେ ଏହି ଯୁଦ୍ଧରେ ଅସ୍ତ୍ର ଧରିବେ ନାହିଁ । ନିରସ୍ତ୍ର ରହିବେ । କେବଳ ଅର୍ଜୁନଙ୍କ ରଥରେ ସାରଥୀ ହେବେ । ମାତ୍ର ସେ ତାଙ୍କର ପ୍ରତିଜ୍ଞା ଉଲ୍ଲଙ୍ଘନ କଲେ ।

ଭୀଷ୍ମ ଦୁର୍ଯୋଧନଙ୍କୁ ବୁଝାଇ ଦେଲେ—ଏ ଯୁଦ୍ଧରେ ପାଣ୍ଡବମାନଙ୍କୁ ଜୟ କରିବା କଷ୍ଟକର ବ୍ୟାପାର । ସ୍ୱୟଂ କୃଷ୍ଣ ଯେଉଁ ପାଣ୍ଡବମାନଙ୍କ ପକ୍ଷରେ ଯୁଦ୍ଧ କରନ୍ତି ସେମାନଙ୍କୁ ଜିଣିବ କିଏ ? ପାଣ୍ଡବଙ୍କୁ ସେମାନଙ୍କର ନ୍ୟାଯ୍ୟ ରାଜ୍ୟ ଫେରାଇ ଦେଇ ସନ୍ଧି କରିବା ପାଇଁ ସେ ତାଙ୍କୁ ପରାମର୍ଶ ଦେଲେ ।

ଦୁର୍ଯୋଧନ ଏହି ସମ୍ବାଦରେ ବ୍ୟଥିତ ହୋଇ କୃଷ୍ଣଙ୍କର ବଡ଼ ଭାଇ ବଳରାମଙ୍କୁ ସ୍ମରଣ କଲେ । ବଳରାମ ସଙ୍ଗେ ସଙ୍ଗେ ଆସି ପହଞ୍ଚିଗଲେ । ଦୁର୍ଯୋଧନ ଭୀଷ୍ମଙ୍କଠାରୁ ଯାହା ଶୁଣିଥିଲେ ବଳରାମଙ୍କ ଆଗରେ ବର୍ଣ୍ଣନା କଲେ ।

ବଳରାମଙ୍କ କ୍ରୋଧ ଦେଖି ଜଣେ ସେ ହଳମୂଷଳ ଧରି ଯୁଦ୍ଧକ୍ଷେତ୍ରରେ ପ୍ରବେଶ କଲେ । ତାଙ୍କର ଏହି ଉଗ୍ରମୂର୍ତ୍ତି ଦେଖି ସମସ୍ତେ ଚକିତ ହୋଇପଡ଼ିଲେ । କୃଷ୍ଣ ତ ଭାଇଙ୍କ ବଳବିକ୍ରମ କଥା ଜାଣନ୍ତି । କୋଟିଏ ସିଂହର ବଳ ତାଙ୍କର । ସେ କ୍ରୁଦ୍ଧ ହେଲେ ତାଙ୍କଠାରୁ ନିସ୍ତାର ନାହିଁ । କୃଷ୍ଣ ଦଉଡ଼ି ଯାଇ ଭାଇଙ୍କର ପାଦ ବନ୍ଦନା କଲେ । କ୍ରୋଧର କାରଣ ପଚାରିଲେ; ଆଉ ଶାନ୍ତ ହେବା ପାଇଁ ବିନମ୍ର ଭାବରେ ଅନୁରୋଧ ଜଣାଇଲେ ।

ବଳରାମ ଏଥିରେ ସନ୍ତୁଷ୍ଟ ହେଲେ ନାହିଁ । କୃଷ୍ଣ ନାହିଁକି ପ୍ରତିଜ୍ଞା ଭଙ୍ଗକରି ଯୁଦ୍ଧରେ ଅସ୍ତ୍ରଧାରଣ କଲେ ଏହା କାରଣ ପଚାରିଲେ । କୃଷ୍ଣ ବିନମ୍ର ହୋଇ କହିଲେ ଯେ ସେ ତାଙ୍କ ପ୍ରତିଜ୍ଞା ଭଗ୍ନ କରି ନାହାନ୍ତି, କି ଅସ୍ତ୍ର ଧାରଣ କରି ନାହାନ୍ତି । ଏହାର ସତ୍ୟତା ସେ ଦ୍ରୋଣ, କର୍ଣ୍ଣ ଓ ସ୍ୱୟଂ ଭୀଷ୍ମଙ୍କ ଠାରୁ ବୁଝିପାରନ୍ତି । ବଳରାମ ଶୁଣି ଜାଣି ଭଲ ଭାବରେ କୃଷ୍ଣ ସେଦିନ ଯୁଦ୍ଧରେ ଅସ୍ତ୍ରଧାରଣ କରିଥିଲେ କି ନାହିଁ ପଚାରିଲେ । କେହି ବି କୃଷ୍ଣଙ୍କ ହାତରେ ଚକ୍ର ଦେଖି ନାହାନ୍ତି, କହିବେ କିଏ ? ଏ ଧର୍ମଯୁଦ୍ଧରେ ମିଥ୍ୟା କହି କିଏ ନରକ ବରଣ କରିବ କିଏ ? ସମସ୍ତଙ୍କର ଏକା ଉତ୍ତର— କୃଷ୍ଣଙ୍କ ହସ୍ତରେ ଅସ୍ତ୍ର ଦେଖି ନାହାନ୍ତି ।

ଏଥିରେ ବଳରାମ ସନ୍ତୁଷ୍ଟ ହୋଇ ପୁନଶ୍ଚ ତୀର୍ଥଯାତ୍ରା କଲେ ।

ଭୀଷ୍ମ କିପରି ମହାବୀର ଥିଲେ ଏହି ଘଟଣାରୁ ସ୍ପଷ୍ଟ ଜଣାଯାଏ ।

ଭୀଷ୍ମ ନଅ ଦିନ ଯୁଦ୍ଧ କଲେ । ଦଶମ ଦିନ ଶିଖଣ୍ଡୀଙ୍କୁ ଦେଖି ଅସ୍ତ୍ରତ୍ୟାଗ କରିବେ ବୋଲି ଯୁଦ୍ଧ ଆରମ୍ଭ ପୂର୍ବରୁ କହିଥିଲେ ।

ବର୍ତ୍ତମାନ ସେହି ସମସ୍ୟା ଉପସ୍ଥିତ ।

ଶିଖଣ୍ଡୀ ହେଉଛନ୍ତି କାଶୀରାଜକନ୍ୟା ଅମ୍ବା । ଅମ୍ବା ଭୀଷ୍ମଙ୍କ ଯୋଗୁ, କିପରି ବଞ୍ଚିତ ହୋଇଥିଲେ, ତାଙ୍କର ଜୀବନର ସମସ୍ତ ସୁଖ କିପରି ଭୀଷ୍ମଙ୍କ ଦ୍ୱାରା ନଷ୍ଟ ହୋଇଥିଲା, ଶେଷରେ ଏହାର ପ୍ରତିକାର ପାଇଁ ସେ କିପରି ପରଶୁରାମଙ୍କ ନିକଟରେ ନିଜର ଅଭିଯୋଗ ଜଣାଇଥିଲେ ଏବଂ ପରଶୁରାମ ତାଙ୍କୁ କି ପରାମର୍ଶ ଦେଇଥିଲେ ଏହା ପୂର୍ବରୁ ବର୍ଣ୍ଣିତ ହୋଇଛି ।

ପରଶୁରାମଙ୍କ ପରାମର୍ଶରେ ଅମ୍ବା ଦେବାଦିଦେବ ମହାଦେବଙ୍କୁ ସନ୍ତୁଷ୍ଟ କରିବା ପାଇଁ ହିମାଳୟ କୋଣରେ କଠୋର ତପସ୍ୟାରେ ପ୍ରବୃତ୍ତ ହେଲେ । ତାଙ୍କର ଏହି ଉଗ୍ର ତପସ୍ୟା ଦେଖି ଶିବଙ୍କର ଆସନ ଟଳିଲା । ସେ ଅମ୍ବାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ବର ପ୍ରାର୍ଥନା କରିବା ପାଇଁ ଅମ୍ବାଙ୍କୁ କହିଲେ । ଅମ୍ବାଙ୍କର କେବଳ ଗୋଟିଏ କଥା, ଭୀଷ୍ମ ତାଙ୍କ ପ୍ରତି ଯେଉଁ ଅନ୍ୟାୟ କରିଛନ୍ତି ତାର ପ୍ରତିଶୋଧ ନେବେ । ତାଙ୍କୁ ହତ୍ୟା

ନୁହନ୍ତି । ଯଦି ତୁହାଲେ ତୁମ୍ଭର ମନୋବାଞ୍ଛା ପୂରଣ ହେବ; ମାତ୍ର ଏ ଜନ୍ମରେ ନୁହେ । ଆର ଜନ୍ମରେ ତୁମର ଯୋଗୁ ସେ ମୃତ୍ୟୁବରଣ କରିବେ ।

ପର ଜନ୍ମ ପାଇଁ ଅମ୍ବା ଅପେକ୍ଷୀବ ହେଲେ । ଅଗ୍ନିରେ ଝାସଦେଇ ସେ ମୃତ୍ୟୁ ବରଣ କଲେ । ଏହି ଅମ୍ବା ପରଜନ୍ମରେ ଦ୍ରୁପଦ ରଜାଙ୍କର କନ୍ୟାରୂପେ ଜନ୍ମଗ୍ରହଣ କଲେ । ତାଙ୍କର ପୂର୍ବ ଜନ୍ମକଥା ମନେଥାଏ । ଆଉ ଏହି ଜନ୍ମରେ ତାଙ୍କର କାମନା ସେ ବପୂରଣ ହୋଇ ନ ଥାନ୍ତି । ନିଜର ଉଦ୍ଦେଶ୍ୟ ସିଦ୍ଧିପାଇଁ ସେ ପୁନଶ୍ଚ ହେଲା ବନରେ ଘୋର ତପସ୍ୟାରେ ପ୍ରବୃତ୍ତ ହେଲେ ଏବଂ ଜନୈକ ଯକ୍ଷଙ୍କ ଆଶୀର୍ବାଦ ଫଳରେ ସ୍ତ୍ରୀତ୍ୱ ହରାଇ ପୁରୁଷତ୍ୱ ଲାଭକଲେ । ଏହି ହେଉଛନ୍ତି ଶିଖଣ୍ଡୀ ।

ଯୁଦ୍ଧର ଦଶମ ଦିନ । ଶିଖଣ୍ଡୀ ହେଲେ ପାଣ୍ଡବପକ୍ଷର ସେନାପତି । ଆଜି ଭୀଷ୍ମଙ୍କର ଶେଷଦିନ ଯୁଦ୍ଧ । କି ପ୍ରଳୟଙ୍କର ମୂର୍ତ୍ତି ! ସତେଅବା ଆଜି ସେ ସମସ୍ତ ପାଣ୍ଡବ ସୈନ୍ୟ ଧ୍ୱଂସ କରିଦେବେ । ଅର୍ଜୁନ ତାଙ୍କର ମୃତ୍ୟୁଭେଦ ଜାଣନ୍ତି । ସେ ଶିଖଣ୍ଡୀଙ୍କୁ ନିଜ ଆଗରେ ରଖି ଯୁଦ୍ଧ ଆରମ୍ଭ କରିଦେଲେ । ଭୀଷ୍ମ ଅର୍ଜୁନଙ୍କର ତୀକ୍ଷ୍ଣ ବାଣ ପ୍ରତିହତ କରିବାକୁ ଯାଇ ଦେଖନ୍ତି ସମ୍ମୁଖରେ ଶିଖଣ୍ଡୀ ।

ଭୀଷ୍ମ ଜାଣନ୍ତି ଶିଖଣ୍ଡୀ ପୁରୁଷ ନୁହନ୍ତି, ସ୍ତ୍ରୀ । ସ୍ତ୍ରୀଲୋକଙ୍କ ସହିତ ଯୁଦ୍ଧ କରିବା ନିଷେଧ । ତେଣୁ ସେ ଅସ୍ତ୍ରତ୍ୟାଗ କରି ମୌନ ହୋଇ ରଥ ଉପରେ ବସି ରହିଲେ । ଏହି ସମୟରେ ଅପର ପକ୍ଷରୁ ଶରବୃଷ୍ଟି ଚାଲିଥାଏ । ଦୁଃଖରେ ଯନ୍ତ୍ରଣାରେ ଭୀଷ୍ମ ଅତିଷ୍ଠ ହୋଇ-ପଡ଼ିଲେ । ଭୀଷ୍ମଙ୍କର ଏପରି ଅବସ୍ଥା ଦେଖି କୌରବ ସୈନ୍ୟ ଭାଜିଲେ । ଦୁର୍ଯ୍ୟୋଧନ ଭୁକ୍ତ କୋଳରେ ଧରି ପକାଇଲେ । ଦୁଃଶାସନ, କର୍ଣ୍ଣ, ଶକୁନି ପ୍ରଭୃତି ବୀରମାନେ ବାଧିବା ସ୍ତ୍ରୀ ପରି କାନ୍ଦି ରଣସ୍ଥଳୀ ପୂର୍ଣ୍ଣ କରିଦେଲେ ।

ଭୀଷ୍ମ ଏ ଦୁର୍ଯୋଗରେ ମଧ୍ୟ ନିଜର ମନର ଦୃଢ଼ତା ହରାଇ ନ ଥାନ୍ତି । ସେ କୌରବ ବୀରମାନଙ୍କୁ ପ୍ରବୋଧନା ଦେଇ କହିଲେ—ଶିଖଣ୍ଡୀ ନାରୀ । ସେଥିପାଇଁ ମୁଁ ତା ସହିତ ଯୁଦ୍ଧ କରିପାରିଲି ନାହିଁ; ଶରତ୍ୟାଗ କଲି ।

ସେ ପର୍ଯ୍ୟନ୍ତ ତାଙ୍କର କୌରବମାନଙ୍କ ପ୍ରତି ମମତା ତୁଟି ନ ଥାଏ । ସେ ଦୁର୍ଯ୍ୟୋଧନଙ୍କୁ ବୁଝାଇ କହିଲେ—"ବତ୍ସ ମୁଁ ତୋର ମଙ୍ଗଳ ଚାହେଁ । ମୁଁ ଯାହା ଦେଖୁଛି ଏ ଯୁଦ୍ଧରେ ତୁମ୍ଭେମାନେ ଜିଣିପାରିବ ନାହିଁ । କୌରବ ସୈନ୍ୟମାନଙ୍କ ସହିତ ସମସ୍ତେ ଧ୍ୱଂସ ହୋଇଯିବ । ଏ ଦୁର୍ଦ୍ଦିନରେ ଦ୍ରୋଣ, କର୍ଣ୍ଣ ଓ ଶଲ୍ୟ ପ୍ରଭୃତି କେହି ତୁମ୍ଭମାନଙ୍କୁ ରକ୍ଷା କରିପାରିବେ ନାହିଁ । ଜଣକ ପରେ ଜଣେ ଏହି ଯୁଦ୍ଧରେ ଅହୁତି ଦେବ । ମୁଁ ସ୍ପଷ୍ଟ କହୁଛି ଆଉ ତୁମେ ଶକୁନି କଥାରେ ପଡ଼ ନାହିଁ । ତାହାର ଯୋଗୁଁ କୌରବ କୁଳ ଧ୍ୱଂସହେବ । ତୁମ୍ଭେ ଭାଇମାନେ, ପାଣ୍ଡବମାନଙ୍କ ସହିତ ଆଉ ବିବାଦ କର ନାହିଁ । ତୁମେ ଯେଉଁ ସମ୍ପଦ ଭୋଗ କରୁଛ ସେଥିରେ ପାଣ୍ଡବମାନଙ୍କର ଭାଗ ଅଛି । ସେତିକି ସେମାନଙ୍କୁ ଦେଇ ଦିଅ । ଉଭୟେ ସୁଖ ଶାନ୍ତିରେ ରହ । ଏହା ମୋର ଅନ୍ତିମ ଇଚ୍ଛା ।"

ଏତେ ପ୍ରବୋଧନାରେ ମଧ୍ୟ ଦୁର୍ଯ୍ୟୋଧନଙ୍କର ଚୈତନ୍ୟ ପରିବର୍ତ୍ତନ ଘଟିଲା ନାହିଁ । ସେ ସ୍ପଷ୍ଟ ଜଣାଇଦେଲେ ଜୀବନରେ ଥିବା ପର୍ଯ୍ୟନ୍ତ ସୂଚ୍ୟଗ୍ର ମେଦିନୀ ମୁଁ ପାଣ୍ଡବଙ୍କୁ ଦେବି ନାହିଁ ।

ଭୀଷ୍ମ ଆଉ କ'ଣ କରିବେ ? ମୌନ ରହିଲେ ।

ସେତେବେଳକୁ ତାଙ୍କୁ ବଡ଼ କଷ୍ଟ ହେଉଥାଏ । ସେଥିପାଇଁ ସେ ତାଙ୍କ ପାଇଁ ଏକ ଶଯ୍ୟା ରଚନା କରିଦେବାପାଇଁ ଅନୁରୋଧ କଲେ । ଆଉ କହିଲେ — ତୁମେ ଜାଣ ମୋ ନିଜ ଇଚ୍ଛାରେ ମୁଁ ମରିବି । ଏହି ବର ପିତାଙ୍କଠାରୁ ମୁଁ ପାଇଅଛି । ଏଣୁ ଯୁଦ୍ଧ ଶେଷ ପର୍ଯ୍ୟନ୍ତ ମୁଁ ରହିବି । ତାପରେ ସ୍ୱଇଚ୍ଛାରେ ପ୍ରାଣ ତ୍ୟାଗ କରିବି ।

ଭୀଷ୍ମଙ୍କଠାରୁ ଆଜ୍ଞା ପାଇ ଦୁର୍ଯ୍ୟୋଧନ ଏକ କୋମଳ ଶଯ୍ୟା ରଚନା କରିଦେଲେ । ଅଣୁଏ ବସ୍ତ୍ରରେ ତୁଳା ଶେଯ ପଡ଼ିଲା । ତା ଆଗରୁ ଓଲଟାଇଲା ନରମ ତକିଆ । ପିତାମହଙ୍କୁ ଏହି ତୁଳୀତଳ୍ପରେ ଅନ୍ତିମକାଳରେ ଶୁଆଇଦେଲେ ।

ଆଜନ୍ମ ବ୍ରହ୍ମଚାରୀ, ମହାବୀର ଭୀଷ୍ମଙ୍କୁ ଏ ଶଯ୍ୟା ସୁଖ ଲାଗିଲା ନାହିଁ । ତୁଳା ଶେଯରେ ଶୋଇ ମଧ୍ୟ ଶରୀରରେ ଅସହ୍ୟ ଯନ୍ତ୍ରଣା ସେ ଅନୁଭବ କଲେ ।

ସେଦିନ ପୌଷମାସ କୃଷ୍ଣପକ୍ଷ ସପ୍ତମୀ । ରାତି ପ୍ରାୟ ଦ୍ୱିପ୍ରହରକୁ ଅନ୍ତତ ହୋଇ-ଗଲାଣି । ଏହି ସମୟରେ କୃଷ୍ଣ ପାଣ୍ଡବମାନଙ୍କ ସହିତ ଭୀଷ୍ମଙ୍କ ନିକଟରେ ପହଞ୍ଚିଲେ । ଭୀଷ୍ମଙ୍କର ଏପରି ଦୟନୀୟ ଅବସ୍ଥା ଦେଖି ଯୁଧିଷ୍ଠିର ଥୟ ଧରି ପାରିଲେ ନାହିଁ । ଶ୍ରାବଣର ବାରିଧାର ପରି ତାଙ୍କ ନୟନ ଯୁଗଳରୁ ଲୋତକ ଧାର ବହିଲା । ପ୍ରକାଶ୍ୟରେ କହିଲେ— ନିଜର କୁଟୁମ୍ବମାନଙ୍କୁ ଏପରି କଷ୍ଟ ଦେଇ ଦୁର୍ଯ୍ୟୋଧନ କି ଯଶ ପାଇବେ ?

ଭୀଷ୍ମଙ୍କ ଆଖି କୃଷ୍ଣଙ୍କ ଉପରେ ପଡ଼ିଲା । ସେ ଅତି କରୁଣ ସ୍ୱରରେ କହିଲେ — ଚକ୍ରଧର, ବଡ଼ ଭାଗ୍ୟର କଥା । ମୁଁ ଏପରି ଅବସ୍ଥାରେ ଆପଣଙ୍କ ମୁଖ ଦେଖିଲି । କ'ଣ କରିବି ? ଆପଣଙ୍କୁ ନମସ୍କାର କରିବାକୁ ମୋର ପ୍ରବଳ ଇଚ୍ଛା ଥିଲା ମଧ୍ୟ ହାତ ଉଠାଇପାରୁ ନାହିଁ ।

ଭୀଷ୍ମଙ୍କ ଅବସ୍ଥା ଦେଖି କୃଷ୍ଣ ଦୟାରେ ବିଗଳିତ ହୋଇଗଲେ । ସେ କହିଲେ — ମହାବୀର, ମୋର ଯୋଗୁଁ ତୁମର ଆଜି ଏ ଅବସ୍ଥା । ସେଥିପାଇଁ ମୁଁ ବଡ଼ ଦୁଃଖିତ । ଜୀବନର ଏହି ଅନ୍ତିମ ମୁହୂର୍ତ୍ତରେ ବର ମାଗ । ସତ୍ୟ କହୁଛି ତୁମେ ଯାହା ମାଗିବ ମୁଁ ପୂରଣ କରିବି ।

ଭୀଷ୍ମ କହିଲେ, ଭଗବାନ, ମୋର କିଛି ଲୋଡ଼ା ନାହିଁ । ଗୋଟିଏ ମାତ୍ର ଦୁଃଖ ରହିଯାଉଛି । ମୋର ପୁଅ ନାହିଁ । ମୋତେ ସମସ୍ତେ ଅପୁତ୍ରିକ ବୋଲି ଘୃଣା କରନ୍ତି । ଏହି ଅପୁତ୍ରିକ ଦୋଷ ଯୋଗୁ ପରକାଳରେ ମୁଁ ଶାନ୍ତି ପାଇ ପାରିବି ନାହିଁ । ଏହି ଦୋଷ ଦୂର କରିବା ପାଇଁ ଅନୁଗ୍ରହ କରନ୍ତୁ ପ୍ରଭୋ !

ଆଜ୍ଞ ଗୋଟିଏ କଥା । ବର୍ତ୍ତମାନ ମୁଁ ମରୁ ନାହିଁ । ମୁଁ ଜାଣେ ମାଘମାସ ଶୁକ୍ଳ ଏକାଦଶୀ ଏକ ପୁଣ୍ୟ ଦିବସ । ସେ ପର୍ଯ୍ୟନ୍ତ ମୁଁ ଜୀବନ ରଖିବି । ତତ୍ପରେ ମୋର ମୃତ୍ୟୁ ହେବ ।

କୃଷ୍ଣ ଭୀଷ୍ମଙ୍କୁ ଆଶ୍ୱାସନା ଦେଇ କହିଲେ, ଅପୁତ୍ର ବୋଲି ଚିନ୍ତାକର ନାହିଁ । ଯେଉଁମାନେ ମନେ ମନେ ଭକ୍ତ ସେମାନେ ସମସ୍ତେ ଭୀଷ୍ମଙ୍କ ପୁତ୍ର । ସେମାନେ ସମସ୍ତେ ଭୀଷ୍ମଙ୍କୁ ପିଣ୍ଡଦାନ କରିବେ । ଯେଉଁମାନେ ଏହା କରିବେ ସେମାନେ ପ୍ରୟାଗରେ ପିଣ୍ଡଦେବାର ଫଳ ଲାଭକରିବେ । ଏଥିପାଇଁ ଚିନ୍ତାକର ନାହିଁ ।

ଭୀଷ୍ମ ଥିଲେ ସନାତନ ଧର୍ମର ରକ୍ଷକ, ତ୍ୟାଗ ଓ ସଂଯମର ପ୍ରତିମୂର୍ତ୍ତି । ଧର୍ମରକ୍ଷା ପାଇଁ ସେ ଯେଉଁ ମହାନ୍ ଆଦର୍ଶ ରଖି ଯାଇଛନ୍ତି ତାହା ଏବେ ସୁଦ୍ଧା ସ୍ମରଣୀୟ ହୋଇ-ଅଛି । ତେଣୁପାଇଁ ଆଶ୍ୱିନ ମାସ ପିତୃପକ୍ଷରେ ଯେତେବେଳେ ପିତୃପୁରୁଷଙ୍କୁ ଜଳଦାନ କରାଯାଏ ସେତେବେଳେ ଭୀଷ୍ମଙ୍କ ପାଇଁ ଏକପୋଷ ଜଳଦେବାର ବ୍ୟବସ୍ଥା ଅଛି ।

କୃଷ୍ଣଙ୍କର ବରଦାନରେ ସନ୍ତୋଷ ପ୍ରକାଶକରି ପିତାମହ ଅର୍ଜ୍ଜୁନଙ୍କୁ ଲକ୍ଷ୍ୟକରି କହିଲେ "ବତ୍ସ ! ଏ ଯୁଦ୍ଧଭୂମି । ଚେତ୍ର ନଈ ଏଠାରେ ଭାସିବ । ରାତିରେ ଡାକିଣୀ ପିଶାଚୀମାନେ ମଡ଼ା ଖାଇବାକୁ ଏଠାରେ ନୃତ୍ୟକରିବେ । କୋମଳ ଶଯ୍ୟାରେ ଶୋଇଲେ ମୋର ନିଦ୍ରାଭଙ୍ଗ ହେବ—ମୁଁ ଏହା ଚାହେଁ ନାହିଁ । ମୋ ପାଇଁ ଗୋଟିଏ ଶରଶଯ୍ୟା ରଚନା କରିଦିଅ । ଯେଉଁଥିରେ ମୁଁ ଶୋଇ ରହିବି, ମାତ୍ର ନିଦ୍ରା ହେବ ନାହିଁ ।

ବୀରର ମନୋଭାବ ବୀର ଜାଣେ । ଶରକୁ ଶର ଛନ୍ଦି ସେ ନିର୍ମାଣ କଲେ ଏକ ସୁନ୍ଦର ଶଯ୍ୟା । ଏ ଶଯ୍ୟାରେ ମହାବୀର ଶୟନ କଲେ । ମୁଣ୍ଡକୁ ତକିଆ ଦରକାର ଶର ମାରି ଅର୍ଜ୍ଜୁନ ସୃଷ୍ଟିକଲେ ଏକ ତକିଆ । ଏହା ଦେଖି ଭୀଷ୍ମ ସନ୍ତୋଷ ପ୍ରକାଶ କରି କହିଲେ—ବତ୍ସ, ଦୀର୍ଘଜୀବୀ ହୁଅ । ତୁମ ବ୍ୟତୀତ ମୋର ମନ ଜାଣି ଏପରି ଶଯ୍ୟା ରଚନା କରିବା ଅନ୍ୟ କାହାଦ୍ୱାରା ସମ୍ଭବ ହୋଇ ନ ଥାନ୍ତା ।

ଶରଶଯ୍ୟାରେ ଶୟନ କଲେ ମଧ୍ୟ ହୃଦୟର ଦହନ ଶାନ୍ତ ହେଲା ନାହିଁ । ପ୍ରବଳ ତୃଷ୍ଣା ଦୂର କରିବା ନିମିତ୍ତ ଓ ଶରୀରରେ ଶୀତଳତା ଆଣିବା ପାଇଁ ଭୀଷ୍ମ ଦୁର୍ଯ୍ୟୋଧନଙ୍କୁ ଜଳ ମାଗିଲେ । ଅଳ୍ପ ମାତ୍ରେ ଶତ ଶତ ସୁବର୍ଣ୍ଣ ଝରିରେ ସୁବାସିତ ଜଳ ଆସି ପହଞ୍ଚିଗଲା । ଦୁର୍ଯ୍ୟୋଧନ ନିଜ ହାତରେ ସେସବୁ ପିତାମହଙ୍କ ଉପରେ ଢାଳିଲେ । କିଛି ଜଳ ତାଙ୍କ ମୁଖରେ ଦେଲେ । ଚାହିଁ ତୃଷା ତ ମେଣ୍ଟିଲା ନାହିଁ ! ଶରୀର ଦହନ ତ ବନ୍ଦ ହେଲା ନାହିଁ ! !

ତାପରେ ସେ ଅର୍ଜ୍ଜୁନଙ୍କୁ କହିଲେ—ବତ୍ସ, ମୋତେ ପ୍ରବଳ ଶୋଷ । ଦେହରୁ ହୁଳା ବାହାରୁଛି । ଶାନ୍ତ କରିପାରିବ ନାହିଁ ଏକାଳା ? ମେଣ୍ଟାଇ ପାରିବ ନାହିଁ ଏହି ତୃଷ୍ଣା ? ଅର୍ଜ୍ଜୁନ ପିତାମହଙ୍କର ମନକଥା ଜାଣିଲେ । ତୂଣୀରରୁ ବାହାର କଲେ ଏକ ଜଳ ଶର । ଧନୁରେ ଯୋଚି ଏହି ଶର ମାରିଦେବା ମାତ୍ରକେ ଆକାଶରୁ ମୁଷଳ ଧାରରେ ଜଳ

ବୃଷ୍ଟି ଆରମ୍ଭ ହୋଇଗଲା । ସତେ ଅବା ସ୍ୱର୍ଗମେଘ ଏକାଠି ହୋଇ ବର୍ଷା ଆରମ୍ଭ କରି ଦେଇଛନ୍ତି !

ଏହି ଜଳ ପଡ଼ିବା ମାତ୍ରକେ ଭୀଷ୍ମଙ୍କର କାୟା ସୁଶୀତଳ ହୋଇଗଲା । ସେ ନିଶ୍ଚିନ୍ତରେ ଶରଶଯ୍ୟାରେ ଶୟନ କଲେ ।

ପିତାମହ ଶାନ୍ତିରେ ବିଶ୍ରାମ ନେବାର ଦେଖି କୃଷ୍ଣ ଓ ପାଣ୍ଡବମାନେ ଫେରି ଆସିଲେ । ଭୀଷ୍ମଙ୍କ ସେନାପତିତ୍ୱରେ ଦଶ ଦିନ ଯୁଦ୍ଧ, ସୁନ୍ଦର ପରିଣତି, ଶେଷରେ ଶରଶଯ୍ୟାରେ ଭୀଷ୍ମଙ୍କର ଅନ୍ତିମ ବିଶ୍ରାମ ଗ୍ରହଣ ବିଷୟରେ ଆଲୋଚନା କରୁ କରୁ ସେମାନେ ପାଣ୍ଡବ ଶିବିରରେ ଉପସ୍ଥିତ ହେଲେ ।

## ● ମହାପ୍ରସ୍ଥାନ

ଭୀଷ୍ମ ଶରଶଯ୍ୟାରେ । କର୍ଣ୍ଣ ଯେତେବେଳେ ଶୁଣିଲେ ପିତାମହ ଆହତ ହୋଇ ମୃତ୍ୟୁର ଅପେକ୍ଷାରେ ସେ ଆଉ ସମ୍ଭାଳି ପାରିଲେ ନାହିଁ, ତାଙ୍କୁ ଦେଖିବା ପାଇଁ ଦଉଡ଼ି ଗଲେ । କର୍ଣ୍ଣ ଓ ଭୀଷ୍ମଙ୍କ ମଧ୍ୟରେ ସମ୍ବନ୍ଧ ସେତେ ପ୍ରୀତିକର ନୁହେଁ । ଦୁର୍ଯ୍ୟୋଧନର ଯେକୌଣସି ବିବେକ ବର୍ଜିତ କାର୍ଯ୍ୟରେ କର୍ଣ୍ଣଙ୍କର ଅକୁଣ୍ଠ ସମର୍ଥନ ଅନେକ ସମୟରେ ଭୀଷ୍ମଙ୍କୁ ଅସନ୍ତୁଷ୍ଟ କରୁଥିଲା । ସେହିପରି ଭୀଷ୍ମଙ୍କର ନୀତିମୂର୍ତ୍ତି ରାଜନୀତି କର୍ଣ୍ଣ ସମର୍ଥନ କରି-ପାରୁ ନ ଥିଲେ । ଏହି ଭାବରୁ ଏହି ଦୁହିଁଙ୍କ ମଧ୍ୟରେ ମତାନ୍ତର ଥିଲା, ମାତ୍ର ଏହି ମତାନ୍ତର କେବେହେଲେ ମନାନ୍ତରରେ ପରିଣତ ହୋଇ ନ ଥିଲା । ସେଥିପାଇଁ ଭୀଷ୍ମ ଯେତେବେଳେ ତାଙ୍କର ଅନ୍ତିମ ଶଯ୍ୟାରେ କର୍ଣ୍ଣ ସେଠାରେ ଉପସ୍ଥିତ ।

ପୂର୍ବର ସବୁ ମାନ ଅପମାନ ଭୁଲିଯାଇ କର୍ଣ୍ଣ ପିତାମହଙ୍କ ଚରଣ ତଳେ ସାଷ୍ଟାଙ୍ଗ ପ୍ରଣିପାତ ଜଣାଇଲେ ଏବଂ ତାଙ୍କର ସମସ୍ତ ଦୋଷ କ୍ଷମା କରିବା ପାଇଁ ବିନୀତ ପ୍ରାର୍ଥନା ଜଣାଇଲେ ।

କର୍ଣ୍ଣଙ୍କର ଏତାଦୃଶ ଆଚରଣରେ ଭୀଷ୍ମଙ୍କ ସ୍ନେହପୂର୍ଣ୍ଣ ହୃଦୟ ଉଦ୍‌ବେଳିତ ହୋଇ ଉଠିଲା । ସେ ତାଙ୍କ କାନ୍ଧରେ ନିଜର ଶିଥିଳ ହସ୍ତ ସ୍ଥାପନ କରି ଅତି କୋମଳ ସ୍ୱରରେ ତାଙ୍କୁ ଆଶୀର୍ବାଦ କରି କହିଲେ, ବତ୍ସ ତୁମେ ରାଧାଙ୍କର ପୁତ୍ର ନୁହଁ, କୁନ୍ତୀଙ୍କର ଜ୍ୟେଷ୍ଠପୁତ୍ର । ନାରଦ ମୋତେ କହିଛନ୍ତି ସୂର୍ଯ୍ୟଙ୍କ ଅନୁଗ୍ରହରୁ କୁନ୍ତୀଙ୍କଠାରୁ ତୁମର ଜନ୍ମ । ମୋର ତୁମପ୍ରତି କୌଣସି ବିଦ୍ୱେଷ ଭାବ ନାହିଁ । କିନ୍ତୁ ପାଣ୍ଡବମାନଙ୍କ ପ୍ରତି ତୁମର ଅହେତୁକ ଘୃଣା ମୋତେ ବିଶେଷ ଭାବରେ ବିଚଳିତ କରିଦେଉଥିଲା । ପାଣ୍ଡବମାନେ ତୁମ ପ୍ରତି କୌଣସି ଶତ୍ରୁତା ଆଚରଣ ନ କଲେ ମଧ୍ୟ ତୁମେ ସେମାନଙ୍କ ବିରୋଧରେ ଯାଅ, ତାଙ୍କପ୍ରତି ଦୁର୍ଯ୍ୟୋଧନ ଅନିଷ୍ଟ ଆଚରଣ କଲାବେଳେ ଯେ ତୁମେ ତାଙ୍କୁ ସାହାଯ୍ୟ କରୁଥିଲ—ଏହା ହିଁ ମୋର ଦୁଃଖର କାରଣ ।

ମୁଁ ଜାଣେ ତୁମେ ମହତ, ଦାନୀ ଓ ପରଦୁଃଖମୋଚନ-ତତ୍ପର । ତୁମେ ସେ ନଗ୍ନାଜିତ୍ ଏବଂ ଅନେକ ଯୁଦ୍ଧରେ ଜୟ କରିଅଛ, ସେ କଥା ମଧ୍ୟ ମୋର ଅଜ୍ଞାତ ନୁହେଁ । ସେ ଯାହାହେଉ ମୋର ଅନୁରୋଧ ପାଣ୍ଡବମାନଙ୍କ ପ୍ରତି ତୁମର ଦେଖି ଶତ୍ରୁତା ଅଛି ଭୁଲିଯାଅ । ଏହାଦ୍ୱାରା ହିଁ ତୁମମାନଙ୍କ ମଧ୍ୟରେ ଥିବା ଭ୍ରାତୃତ୍ୱ ବନ୍ଧନ ସୁଦୃଢ଼ ହେବ—ମୋ ବିଚାରରେ ଏହା ହିଁ ଉଚିତ୍ ପନ୍ଥା !

"ପୂଜ୍ୟ ପିତାମହ"—ଅତି ବିନୀତ ସ୍ୱରରେ କର୍ଣ୍ଣ ଉତ୍ତର ଦେଲେ । "ମୁଁ ଜାଣେ କୁନ୍ତୀ ମୋର ଜନ୍ମଦାତ୍ରୀ । ମୁଁ ପାଣ୍ଡବମାନଙ୍କର ଅଗ୍ରଜ, ସୂତପୁତ୍ର ନୁହେଁ । ମାତ୍ର ଆପଣ ଜାଣନ୍ତି ମୋର ବିପଦ ବେଳେ ଦୁର୍ଯ୍ୟୋଧନ ମୋତେ ସାହାଯ୍ୟ କରିଛନ୍ତି, ମୋର ମାନ ଇଜ୍ଜତ ରଖିଛନ୍ତି । ତାଙ୍କର ବାହୁଚ୍ଛାୟା ତଳେ ମୁଁ ବର୍ଦ୍ଧିତ । ମୋର ସବୁ ମାନ, ସବୁ ଧନ, ତାଙ୍କର ପାଇଁ । ପୁନଶ୍ଚ ମୁଁ ତାଙ୍କର ଅନ୍ନ ଖାଇଛି । ଦୁର୍ଯ୍ୟୋଧନ ମୋର ଅନ୍ତରଙ୍ଗ ସାଥୀ ରୂପେ ମୋଠାରେ ଅଖଣ୍ଡ ବିଶ୍ୱାସ ସ୍ଥାପନ କରିଛନ୍ତି, କହନ୍ତୁ ଓ ଏପରି ପରିସ୍ଥିତିରେ, ଏ ଦୁର୍ଦ୍ଦିନରେ ମୁଁ ତାଙ୍କୁ କିପରି ପରିତ୍ୟାଗ କରିବି ?

ଏହି ବିପଦ ସାଗରରେ ସେ ମୋତେ ଦୃଢ଼ ନୌକା ରୂପେ ଗ୍ରହଣ କରିଛନ୍ତି ଏବଂ ଉଦ୍ଧାର ପାର ହେବାର ଆଶା ପୋଷଣ କରିଛନ୍ତି । ଏତେବେଳେ ତାଙ୍କୁ ନିରାଶ କରିବା କ'ଣ ମୋର କର୍ତ୍ତବ୍ୟ ?

ମୋତେ ଆଶୀର୍ବାଦ କରନ୍ତୁ, ଅନୁମତି ଦିଅନ୍ତୁ ଯେପରି ମୋର ଜୀବନ ବିନିମୟରେ ମୁଁ ଦୁର୍ଯ୍ୟୋଧନଙ୍କର ଋଣ ଶୁଝିବାକୁ ସମର୍ଥ ହୁଏ ।

ଭୀଷ୍ମ କର୍ଣ୍ଣଙ୍କର ମନୋଭାବ ବୁଝିଲେ । ଅନ୍ୟର ଗୁଣ ପ୍ରତି ସ୍ୱୀକୃତି ଦେବାରେ ଭୀଷ୍ମ ଥିଲେ ଅଦ୍ୱିତୀୟ । ସେ କର୍ଣ୍ଣଙ୍କର ଅନ୍ତର ଦୃଢ଼ତା ଅନୁଭବ କଲେ ଏବଂ ଆଶୀର୍ବାଦ କରି କହିଲେ—ବତ୍ସ; ବାସ୍ତବିକ୍ ତୁମେ ମହତ, ତୁମେ ଉଦାର, ଦୁର୍ଯ୍ୟୋଧନଙ୍କ ପ୍ରତି ଅନୁରକ୍ତ ହୁଅ । ତାଙ୍କୁ ଏ ବିପଦବେଳେ ସାହାଯ୍ୟ କର । କୌରବ ସୈନ୍ୟମାନଙ୍କୁ ନିଜର ଲୋକ ମନେକରି ସେମାନଙ୍କର ତତ୍ତ୍ୱ ନିଅ । ଶତ୍ରୁମାନଙ୍କ ସହିତ ଯୁଦ୍ଧ କରି ଦୁର୍ଯ୍ୟୋଧନଙ୍କୁ ଜିତାଅ । ସୂର୍ଯ୍ୟଦେବ ତୁମଠି ପ୍ରସନ୍ନ ହୁଅନ୍ତୁ । ଅଧିକ ଏପରି ଅବସ୍ଥାରେ ମୁଁ ଆଉ କଣ କହିବି, ଯାଅ ।

କର୍ଣ୍ଣଙ୍କୁ ଭୀଷ୍ମ ଯେଉଁ ଆଶୀର୍ବାଦ କଲେ ସେଥିରେ କର୍ଣ୍ଣ ଉତ୍ଫୁଲ୍ଲ ହୋଇ ପ୍ରତ୍ୟାବର୍ତ୍ତନ କଲେ ।

କର୍ଣ୍ଣ ଓ ଭୀଷ୍ମଙ୍କ ମଧ୍ୟରେ ହୋଇଥିବା ଏହି କଥା ଭିତରୁ ଜଣାଯାଏ ଭୀଷ୍ମ କର୍ଣ୍ଣଙ୍କର ପ୍ରକୃତ ଔଦାର୍ଯ୍ୟ ଅବଧାରଣ କରିଥିଲେ ମଧ୍ୟ ପୂର୍ଣ୍ଣ ଭାବରେ ତାଙ୍କ ଉପରେ ସନ୍ତୁଷ୍ଟ ନ ଥିଲେ । ଯେ କୌଣସି ବ୍ୟକ୍ତି ଉଦାର ଓ ମହତ୍ ହେଲେ ମଧ୍ୟ, ଅନ୍ୟମାନଙ୍କର ଦୁଃଖ ଦୂର କଲେ ମଧ୍ୟ ସେ ଅନ୍ୟାୟର ପ୍ରତିରୋଧ କରି ନ ପାରେ; ବରଂ ସେଥିରେ ଅଂଶୀଦାର ହୁଏ—

କେବେ ତାର ସମସ୍ତ ଗୁଣ ଏବଂ ଗୋଟିଏ ଦୋଷଦ୍ୱାରା ନଷ୍ଟ ହୋଇଯାଏ । ହାଣ୍ଡିଏ ଅମୃତରେ ଟୋପାଏ ବିଷ ପରି ଏହା କାର୍ଯ୍ୟ କରିଥାଏ । ଏହି କାରଣରୁ ପିତାମହ ପାଣ୍ଡବମାନଙ୍କୁ ବଞ୍ଚନା କରି ଦୁର୍ଯ୍ୟୋଧନଙ୍କୁ ନିଷ୍କଣ୍ଟକ ରାଜ୍ୟ ପ୍ରଦାନ କର—ଏହି ଆଶୀର୍ବାଦ ଦେଇ ପାରିଲେ ନାହିଁ ।

ଜୀବନର ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ସତ୍ୟପଥରୁ, ନ୍ୟାୟପଥରୁ ମୁହୂର୍ତ୍ତକ ପାଇଁ ଭୀଷ୍ମ କପଟ-ସ୍ଖଳିତ ହୋଇ ନ ଥିଲେ ତାହା ଏହି ଘଟଣାରୁ ଜଣାଯାଏ ।

କୁରୁକ୍ଷେତ୍ର ଯୁଦ୍ଧ ଶେଷ ହେଲା । କୌରବକୁଳ ଧ୍ୱଂସ ହେଲା । କୁରୁକ୍ଷେତ୍ର ଦେଖାଯାଉଥିଲା ଏକ ବୀଭତ୍ସ ଶ୍ମଶାନ ପରି ।

ଯୁଦ୍ଧରେ ଜୟଲାଭ ପରେ ଯୁଧିଷ୍ଠିରଙ୍କର ଅଭିଷେକର ଆୟୋଜନ ହେଲା । ଧର୍ମପୁତ୍ର କହିଲେ—ଏପର୍ଯ୍ୟନ୍ତ ପିତାମହ ଭୀଷ୍ମ ଶରଶଯ୍ୟାରେ ଶାୟିତ । ତାଙ୍କର ଅନୁମତି ତଥା ଆଶୀର୍ବାଦ ନ ନେଇ ରାଜା ହେବି କିପରି ?

କଥାଟା ସମସ୍ତଙ୍କ ମନକୁ ପାଇଲା । ପାଣ୍ଡବ ପାଞ୍ଚଭାଇ ଓ ଶ୍ରୀକୃଷ୍ଣ ଭୀଷ୍ମଙ୍କ ନିକଟରେ ପହଞ୍ଚିଲେ । ମହାରଥୀ ଶରଶଯ୍ୟାରେ । ଚକ୍ଷୁଦ୍ୱୟ ମୁଦ୍ରିତ । ଆଗନ୍ତୁକମାନଙ୍କର ପଦଶବ୍ଦରେ ତାଙ୍କର ମହାଯୋଗ ଯେପରି ଭଗ୍ନ ହେଲା । ସେ ଆଖି ଫିଟାଇ ଚାହିଁଲେ । ଯୁଧିଷ୍ଠିରଙ୍କୁ ଦେଖିବାକ୍ଷଣି ସେ କହି ପକାଇଲେ—ଯାଅ ବତ୍ସ, ନିଷ୍କଣ୍ଟକ ରାଜ୍ୟ ଭୋଗ କର । ମୋ ପାଖକୁ କାହିଁକି ଆସିଲ ?

ଯୁଧିଷ୍ଠିରଙ୍କର ଆଖି ଛଳ ଛଳ ହୋଇ ଆସିଲା । ଅତି ମଧୁର ସ୍ୱରରେ ସେ କହିଲେ—ଆପଣ କୁରୁକୁଳର ଶ୍ରେଷ୍ଠ ବ୍ୟକ୍ତି, ଦୈବ ବିଧାତା । ଆପଣ ଆମ୍ଭମାନଙ୍କର ମଙ୍ଗଳ ପାଇଁ ଅସ୍ତ୍ର ତ୍ୟାଗ କଲେ । ଆପଣ ସତ୍ୟକୁ ଧରିଥାଆନ୍ତି କିଏ ଆପଣଙ୍କୁ ଜିଣିବା ପାଇଁ ସକ୍ଷମ ହୋଇଥାନ୍ତା ? ସ୍ୱୟଂ ପରଶୁରାମ ଯାହାଙ୍କ ବାହୁବୀର୍ଯ୍ୟରେ ପରାଜିତ ତାଙ୍କୁ ଜିତିବାର କ୍ଷମତା କାହାର ଅଛି ? ଆପଣଙ୍କର ଆଶୀର୍ବାଦ ଫଳବତୀ ହୋଇଛି । ଆଶୀର୍ବାଦ କରନ୍ତୁ ମୁଁ ଯେପରି ଧର୍ମପଥରୁ ବିଚ୍ୟୁତ ନ ହୁଏ । କ୍ଷମତାର ନିଶା ଯେପରି ମୋତେ ସତ୍ୟଭ୍ରଷ୍ଟ କରି ନ ପାରେ, ଅର୍ଥର ମୋହ ଯେପରି ମୋତେ ଅନ୍ଧ ନ କରେ ।

ଭୀଷ୍ମଙ୍କ ମୁଖରେ ହାସ୍ୟର ରେଖା ଦେଖାଗଲା । ସେ ଆଶୀର୍ବାଦ ଦେଇ କହିଲେ ବତ୍ସ ! ସ୍ୱୟଂ ଶ୍ରୀକୃଷ୍ଣ ଯାହାଙ୍କର ସହାୟ ତାର ଆଉ ଭୟ କଣ ?

ଆନନ୍ଦରେ ରାଜା ହୁଅ, ପ୍ରଜାମାନଙ୍କୁ ଶାନ୍ତିରେ ପ୍ରତିପାଳନ କର । ମନେ ରଖିଥିବ, ପ୍ରଜାମାନେ ପୁତ୍ରପରି । ସେମାନଙ୍କର ଆନନ୍ଦରେ, ସେମାନଙ୍କର ସୁଖରେ ରାଜା ସୁଖୀ ହୋଇଥାନ୍ତି । ଅଧିକନ୍ତୁ ପ୍ରଜାମାନଙ୍କୁ ନ୍ୟାୟରେ ପାଳିଲେ ଇନ୍ଦ୍ର ଯଥା ସମୟରେ ବୃଷ୍ଟି କରନ୍ତି, ଧନଧାନ୍ୟରେ ବସୁନ୍ଧରା ଭରପୁର ହୋଇଥାଏ । ପ୍ରଜା ସନ୍ତୁଷ୍ଟ ହେଲେ ରାଜାଙ୍କର ଶ୍ରୀବୃଦ୍ଧି ହୋଇଥାଏ, ଆଉ ସେମାନେ ଆନନ୍ଦରେ ରହିଲେ ରାଜାଙ୍କର ଆୟୁ ବୃଦ୍ଧି ହୁଏ । ଆଉ ଗୋଟିଏ କଥା । ଅନେକ ସମୟରେ ରାଜାମାନେ ଦେଶକୁ ତାର

ଦୋଷ ତୁଳନାରେ ଅଧିକ ଦଣ୍ଡ ଦେଉଥାନ୍ତି । ସେପରି କରିବ ନାହିଁ । ଦୋଷାଦୋଷ ଉତ୍ତମ ରୂପେ ବିବେଚନା କରି ଦଣ୍ଡ ଦେଲେ ଲୋକମାନେ ସନ୍ତୁଷ୍ଟ ହୁଅନ୍ତି । ପ୍ରଜାମାନେ ସତ୍ ଉପାୟରେ କି ଅସତ୍ ଉପାୟରେ ଜୀବନଯାପନ କରୁଛନ୍ତି ଚର ପଠାଇ ବୁଝୁଥିବ । ଅନୀତି ଆଚରଣ କରୁଥିବା ଲୋକପ୍ରତି କଠୋର ଦଣ୍ଡଦେବ—ଏପରିକି ଆବଶ୍ୟକ ହେଲେ ମୃତ୍ୟୁଦଣ୍ଡ ତା ପ୍ରତି ବିଧାନ କରିବ । ଏ ସବୁ କଲେ ଲକ୍ଷ୍ମୀ ମଣ୍ଡଳରେ ରହିବେ । ପ୍ରଜାଙ୍କର ଜମିବାଡ଼ି ପରିମାଣ ନିର୍ଣ୍ଣୟ କରି ଖାଜ୍‌ଜମ୍ କର ନେବା ଉଚିତ୍ । ତଦ୍ୱାରା ପ୍ରଜାମାନେ ସନ୍ତୁଷ୍ଟ ହୁଅନ୍ତି ଓ ରାଜାଙ୍କର ଦୀର୍ଘଜୀବନ କାମନା କରନ୍ତି । ରାଜ୍ୟରେ ବିଦ୍ରୋହ ହେଲେ ଏହା ଦମନ କରିବା ପାଇଁ ନିଜର ଭାଇକୁ ପଠାଉଥିବ । ଆଉ ଯେଉଁମାନେ ଅତ୍ୟନ୍ତ ଚତୁର ବାଛି ବାଛି ସେପରି ଲୋକଙ୍କୁ ମନ୍ତ୍ରୀ ପଦରେ ନିଯୁକ୍ତ କରିବା ବିଧିସଙ୍ଗତ । କୃଷକମାନଙ୍କୁ ଅର୍ଥଦଣ୍ଡରେ ଦଣ୍ଡିତ କରିବ ନାହିଁ, ଆଉ ନିର୍ଦ୍ଦୋଷଙ୍କ ପ୍ରତି ସର୍ବଦା କ୍ଷମା ଆଚରଣ କରୁଥିବ । ନିଜର ରାଜ୍ୟ ଶତ୍ରୁମାନଙ୍କ କବଳରୁ ରକ୍ଷା କରିବା ପାଇଁ ସର୍ବଦା ଜାଗ୍ରତ ଥିବ । ପରରାଜ୍ୟ ଅପହରଣ କରିବା ନିମିତ୍ତ କଦାପି ମନକରିବ ନାହିଁ । ପଣ୍ଡିତମାନଙ୍କଠାରୁ ଧର୍ମୋପଦେଶ ଶୁଣୁଥିବ । ସ୍ତ୍ରୀ ଲୋକମାନଙ୍କଠାରେ ଅଦୌ ବିଶ୍ୱାସ ରଖିବ ନାହିଁ । ପ୍ରଜାମାନେ ବିପନ୍ନ ହେଲେ ସେମାନଙ୍କୁ ସର୍ବଦା ସାହାଯ୍ୟ କରୁଥିବ । ଧନ ସଞ୍ଚୟ କରି ରଖିବାକୁ ଅଦୌ ମନ ଦେବ ନାହିଁ । ପ୍ରଜାମାନେ କିପରି ଚଳୁଛନ୍ତି ଗୁପ୍ତ ଭାବରେ ଯାଇ ବୁଝୁଥିବ, ଆଉ ଦେବତା ବ୍ରାହ୍ମଣଙ୍କଠାରେ ସର୍ବଦା ଧ୍ୟାନ ରଖିଥିବ । ପରଧନ ପରସ୍ତ୍ରୀ ପ୍ରତି କଦାପି ଲୋଭ କରିବ ନାହିଁ । କେବଳ ବିବାହିତା ନାରୀ ସହିତ ସମ୍ପର୍କ ରଖିଥିବ । ଯେଉଁମାନେ ବୃଦ୍ଧ, ଯେଉଁମାନେ ଅଧିକ ଦୁର୍ବଳତର ଲୋକ ସେମାନଙ୍କର ବିଶ୍ରାମ ଶ୍ରେୟସ୍କର । ଯେଉଁମାନେ ଶରଣ ପଶିବେ ସେମାନଙ୍କୁ ଆଶ୍ରୟ ଦେବା ରାଜାର ପରମ କର୍ତ୍ତବ୍ୟ । ଗୋରୁ ଏବଂ ବ୍ରାହ୍ମଣମାନେ ଯେପରି କଷ୍ଟ ନ ପାଆନ୍ତି ସେଥିପ୍ରତି ସତର୍କ ଦୃଷ୍ଟି ରଖିଥିବ । ଗୋରୁମାନଙ୍କର ଚରିବା ନିମିତ୍ତ ଯେପରି ଯଥେଷ୍ଟ ଗୋଚର ଜମି ରହେ ତାର ବ୍ୟବସ୍ଥା କରିବ । ଗୁଣୀମାନଙ୍କର ଗୁଣ ଜାଣି ପୂଜା କରୁଥିବ, ଆଉ ସେବକମାନଙ୍କ ପ୍ରତି କଦାପି କୃପଣ ହେବ ନାହିଁ । ରାଜ୍ୟ ଶାସନ ବିଷୟରେ ଯୁଧିଷ୍ଠିରଙ୍କୁ ଏହିପରି ଶେଷ ଉପଦେଶ ଦେବା ପରେ 'କୃଷ୍ଣ' 'କୃଷ୍ଣ' କହି ଭୀଷ୍ମଦେବ ଶେଷ ନିଶ୍ୱାସ ତ୍ୟାଗ କଲେ ।

ଦେବଗଣ ପୁଷ୍ପକ ରଥରେ ତାଙ୍କୁ ବୈକୁଣ୍ଠପୁରକୁ ନେଇଗଲେ ।

ଏହିପରି ଏକ ମହାମନସ୍କ ଜୀବନର ଅବସାନ ହେଲା ।

ଭୀଷ୍ମ ଆଉ ନାହାନ୍ତି, ମାତ୍ର ତାଙ୍କୁ ସ୍ମରଣ କଲାବେଳେ ଏକ ତ୍ୟାଗମୂର୍ତ୍ତି ଜୀବନ, ଏକ ମହାନ୍ ଧନୁର୍ଦ୍ଧାରୀ ବୀର, ସତ୍ୟପଥରେ ପରିଚାଳିତ ହେବାପାଇଁ ପ୍ରବର୍ତ୍ତନା ଦେଇଥିବା ଏକ ନିସ୍ୱାର୍ଥପର ନିରଳସ କର୍ମୀଙ୍କର ଜୀବନ୍ତ ପ୍ରତିମୂର୍ତ୍ତି ନୟନ ପଥରେ ଉଦ୍‌ଭାସିତ ହୋଇଯାଏ ।